# ଶ୍ରୀବତ୍ସ ସ୍ମରଣିକା

## ଷଣ୍ଣବତିତମ ଜନ୍ମବାସରେ
୧-୧୦-୧୯୭୫




ସମ୍ପାଦନା :
ଶ୍ରୀ ବାଞ୍ଛାନିଧି ପଟ୍ଟନାୟକ
ସମ୍ପାଦକ, ଶ୍ରୀବତ୍ସ ଗୋରକ୍ଷାଶ୍ରମ
ଛନରଡ଼ା, ଗଞ୍ଜାମ

ଓଁ

କୃଣ୍ୱନ୍ତୁ ବିଶ୍ୱମାର୍ଯ୍ୟମ୍

ଓଁ ବିଶ୍ୱାନି ଦେବ ସବିତୁର୍ଦୁରିତାନି ପରାସୁବ ।
ଯଦ୍ ଭଦ୍ରଂ ତନ୍ନ ଆସୁବ

ଶ୍ରୀବତ୍ସ ପଣ୍ଡା

(କିଏ କ'ଣ କହନ୍ତି)

ସୁପ୍ରଭାତ ଆଜି ଭାଗ୍ୟ ସୁପ୍ରସନ୍ନ
କାଲି ତନରଡ଼ା ଗୋଶାଳା ଦର୍ଶନ ।
ଆହା କି ପବିତ୍ର ତୀର୍ଥ ମନୋରମ
ଗୋଶାଳା ନୁହେଁ ସେ ସୁରଭି ଆଶ୍ରମ ।
ପଣ୍ଡିତ ଶ୍ରୀବତ୍ସ ଆବାଲ୍ୟ ସଂସ୍କାରୀ
ସେ ପୁଣ୍ୟ ଆଶ୍ରମେ ଶାନ୍ତ ତପଶ୍ଚାରୀ ।
ସଂସ୍କାର ସାହିତ୍ୟ ତପସ୍ୟା ସାଧନ
କରନ୍ତି ସେଠାରେ ହୋଇ ଯୋଗମଗ୍ନ ।
ଦିଶୁନାହିଁ ନେତ୍ରେ ଶୁଭୁ ନାହିଁ କାନେ
ତଥାପି କର୍ମରେ ରତ ଏକ ଧ୍ୟାନେ ।
ଏ ଆଶ୍ରମ ତାଙ୍କ ପବିତ୍ର ସୁକୃତି
ବହିଥିବ କାଳେ କାଳେ ତାଙ୍କ ସ୍ମୃତି ।
ନିଜ ସ୍ମୃତି ସ୍ତମ୍ଭ ନିଜେ ଗଲେ ପୋତି,
ନିଃସ୍ୱରିବ ତହିଁ ଶୁଭ୍ର ସ୍ୱଚ୍ଛ ଦ୍ୟୁତି ।
ପାରିବ ସେ ନବ ଆଦର୍ଶ ବିତରି
ମଣି-ମୁକ୍ତା ସ୍ତମ୍ଭ ନୁହେ ତାକୁ ସରି ।
ବାର୍ଦ୍ଧକ୍ୟ ସୁଦ୍ଧା ସେ ଶକ୍ତି ଧନେ ଧନୀ
ଚାଲିଛି ଅଶ୍ରାନ୍ତେ ତାହାଙ୍କ ଲେଖନୀ ।

ନ ଥାଏ ଭ୍ରୂକ୍ଷେପ ଆକ୍ଷେପେ କଟାକ୍ଷେ,
ସତ୍ୟ ଶିବ ସେବା ରତ ମନୋବାକ୍ୟେ ।
କରିବାକୁ କାର୍ଯ୍ୟ ଯୋଗ୍ୟ କେତେ ଜଣ
ମାତ୍ର ବାନ୍ଧିବାକୁ ଛନ୍ତି ପଣ ପଣ ।
ନ ଦେଖନ୍ତି ନିଜ ନେଏଁ ନିଜ ବ୍ରତ
ପର ଉପଦେଶେ ଦେଖାନ୍ତି ପାଣ୍ଡିତ୍ୟ ।
ଏହି ଜ୍ୟୋତିଷ୍କଟି ଔର୍ଦ୍ଧକ୍ୟ ବଢାଏ
ଜଳେ ଧୂକୁ ଧୂକୁ ସଂସାର ଆକାଶେ ।
ତଥାପି କରନ୍ତି ବିକୀରଣ ଜ୍ୟୋତି
ପ୍ରଭା ହୀନ ନୁହେ ପୁରାତନ ମୋତି ।

କବିବର ଚିନ୍ତାମଣି ମହାନ୍ତି
(ଧୁମୁହର କାବ୍ୟରେ)



ଯେନ ଆହେ ଅର୍ଘ୍ୟ ଯେନ ମୋର ନମସ୍କାର
ଆଜି କେହି କରୁ ଅବା ନ କରୁ କରେଁ ମୁଁ ନମସ୍କାର ।
ସଂସାର ପଥେ ସାଥୀ ଯେହୁଥିଲ ଆପଣାର
ଏକ ଏକ ଗଲେ ଚାଲି ରହିଅଛ ଅପେକ୍ଷି ଆହ୍ୱାନ କାହାର ।
ବିଶ୍ୱାସୀ ତୁମେ ଏକ ବ୍ରହ୍ମର ବିଶ୍ୱାସରେ ରହିଅଛ ବସି
ହୋମାନଳ ଜାଳି ଆହ୍ୱାନୁଛ ମନ୍ତ୍ର ଫୁଙ୍କି ଏହି ଦେଖ ହସି ।
ପୁଣି ଉଠିବ କେବେ ଆର୍ଯ୍ୟବର୍ତ୍ତ ହେବ ଛିନ୍ନ ଭିନ୍ନ ପୁଣି,
ଅନ୍ୟାୟ, ଅତ୍ୟାଚାର ସମାନ ଅନ୍ତର୍ମିଳନ ହେବୁହେବ ଛିନ୍ନଭିନ୍ନ
ନିଜ ଜୀବନର ଯୌବନର ପ୍ରୌଢ଼ିର ଗତପଥ ଧରି,
ବସିଅଛ ସୁଖେ ଦୁଃଖେ ଯେନ ଅର୍ଘ୍ୟ ଏହିକ୍ଷଣି ।

ପଦ୍ମ ଶ୍ରୀ ଲକ୍ଷ୍ମୀନାରାୟଣ ସାହୁ
(କବିତା ମଞ୍ଜରୀ)ରେ

—*—

ଫାଙ୍କଶପୁରରେ ସବରେଜିଷ୍ଟ୍ରାର ଥିବାବେଳେ ପଣ୍ଡାବାବୁ "ଫାଙ୍କଶପୁର" ଶୀର୍ଷକ ତିନିଗୋଟି ପ୍ରବନ୍ଧ ଉତ୍କଳ ସାହିତ୍ୟରେ ଲେଖିଥିଲେ । ସେ ପ୍ରବନ୍ଧ ପଢ଼ି କବିବର ରାଧାନାଥ ତାଙ୍କୁ ଜାଜପୁ ଜୀବନ ବିଷୟରେ ଏକ ଲେଖା ଲେଖିବାକୁ ଅନୁରୋଧ କରିଥିଲେ । କଟକରେ ଉତ୍କଳ ସମ୍ମିଳନୀରେ କବିବରଙ୍କ ସହ ତାଙ୍କର ପ୍ରଥମ ସାକ୍ଷାତବେଳେ କବିବର କହିଥିଲେ ଯେ, ସେ ତାଙ୍କୁ ଭଲ କରି ଜାଣନ୍ତି । 'ଫାଙ୍କଶପୁର' ପ୍ରବନ୍ଧରୁ ସେ ତାଙ୍କୁ ଭଲ କରି ଜାଣନ୍ତି ।

———

ଭକ୍ତ କବି ମଧୁସୂଦନ ଥରେ ବଡ଼ଖେମଣ୍ଡୀ ଯାଇଥିଲେ । ସେତେବେଳେ ଶ୍ରୀବତ୍ସ ପଣ୍ଡା ସେଠାରେ ସବରେଜିଷ୍ଟ୍ରାର ଥିଲେ । ତାଙ୍କୁ ଦେଖି ଭକ୍ତ କବି କହିଥିଲେ ଯେ, ସେ ଉତ୍କଳର ବିଦ୍ୟାସାଗର, ବିଧବା ବିବାହ ପାଇଁ ସେ ପତ୍ରପତ୍ରିକାମାନଙ୍କରେ ଲେଖିଥିବା ପ୍ରବନ୍ଧ ଏବଂ ଫାଙ୍କଶପୁରଠାରେ ସେ ଏକ ବିଧବା ବିବାହ କରାଇଥିବା ଯୋଗୁଁ ଭକ୍ତକବି ତାଙ୍କୁ ଏହିପରି କହିଥିଲେ ।

ସମ୍ବଲପୁରଠାରେ ଉତ୍କଳ ସମ୍ମିଳନୀରେ ବ୍ୟାସ କବି ଫକୀରମୋହନ ପଣ୍ଡାବାବୁଙ୍କୁ ଦେଖି କହିଥିଲେ 'ଆପଣଙ୍କ ସବୁ ଲେଖା ମୁଁ ମନଯୋଗ କରି ପଢ଼େ । ଆପଣଙ୍କୁ ଅନେକ ଲୋକ ଗାଳି ଦେଉଥାନ୍ତି । ବୁଝିବେ ଯେ, ଆପଣଙ୍କ ଲେଖାରେ କିଛି ସାର କଥା ଥିବାରୁ ଲୋକେ ପଢ଼ନ୍ତି ଓ ଗାଳି ଦିଅନ୍ତି । ସାର କଥା ନ ଥିଲେ କେହି ଗାଳି ଦିଅନ୍ତେ ନାହିଁ ।''

କବି ଶ୍ରେଷ୍ଠ ଗଙ୍ଗାଧର ଥରେ କହିଥିଲେ ''ଶ୍ରୀବତ୍ସ ବାବୁ, ଆପଣଙ୍କ ଲେଖାରେ ମୁଁ ବିଶେଷତ୍ୱ ଉପଲବ୍ଧି କରିଅଛି । ତହିଁରେ ନିର୍ଭୀକ ସତ୍ୟବାଦିତା ସ୍ପଷ୍ଟ ଦେଖାଯାଏ । ତଦ୍ୱାରା ବହୁ ଲୋକଙ୍କର ବହୁ ଉପକାର ଘଟିଥାଏ ।''

———

# ଶ୍ରୀବତ୍ସ-ସ୍ମରଣେ

ଅନ୍ଧାରେ ନ ହଜେ କେବେ ଆଲୋକ ସନ୍ତାନ
କାଳଙ୍କ ପାରଇ କରି ତାର ନବ ମ୍ଳାନ ?
ହେ ଆର୍ଯ୍ୟ ପ୍ରବର ବୀର ନିର୍ଭୀକ ସାଧକ
ମାନବର ସେବା ପ୍ରେମୀ ଶୁଦ୍ଧ ସଂସ୍କାରକ ।
ତୁମକୁ ନ ପାରେ ଭୁଲି କଦାପି ଉତ୍କଳ,
କାଳ ଗନ୍ଧାଧରେ ତୁମେ ରତ୍ନ ସମୁଜ୍ଜ୍ୱଳ ।
ଉତ୍କଳର ଜାତୀୟତା ଯାବତ ଜୀବିତ,
ଶ୍ରୀବତ୍ସ ନୋହିବ କେବେ ସ୍ମୃତି ଅନ୍ତର୍ହିତ ।
ନିବିଡ଼ ତମିସ୍ରା ଘେରି ସେ କାଳ ଗହ୍ୱରେ
ସଂଗ୍ରାମ ସାଧନା ତବ ସମାଜର ସ୍ତରେ ।
ମାନସେ ବହ୍ନିସ୍ତୁ ଭରେ ଅଙ୍କୁର ଉତ୍କଳେ
କଳନା ଦୁରୂହ ତୁମେ ବଳୀ ଆତ୍ମ ବଳେ ।
ସେଦିନର ଜାତୀୟତା ତରୁ ଆଜ ଦ୍ରୁମ
ଶତ ଶାଖା ପୁଷ୍ପ ଫଳେ ନିତି-ମନୋରମ ।
ତରୁ କାଳେ ମୂଳେ ତା'ର ସଲିଳ ସେଚନ
ଯେ କରିଛି ସେଇ ଧନ୍ୟ, ଧନ୍ୟ ସେ ଜୀବନ
ସେ ଧନ୍ୟ ଜୀବନ ମଧ୍ୟେ ତୁମେ କର୍ମବୀର
ଉଜ୍ଜ୍ୱଳ ଜ୍ୟୋତିଷ୍କ ଅବିସ୍ମରଣୀୟ ଚିର
ଶ୍ରୀବତ୍ସ ସାର୍ଥକ ନାମା ଏ ମାଟି ଶ୍ରୀବତ୍ସ
ବ୍ୟକ୍ତିର ସ୍ୱଭାବ ଚିନ୍ତା ସାଧନାର ଉତ୍ସ ।

ଶ୍ରୀ ବାଞ୍ଛାନିଧି ଦାସ



# ପଞ୍ଚାୟତ

ଲେଖକ-ଶ୍ରୀବତ୍ସ ପଣ୍ଡା

ଯାହାକି ପାଂଚଲୋକର ଆୟତ୍ତ ଅର୍ଥାତ୍ ଏକାଧିକ ଲୋକର ବଶ୍ୟତାଧୀନ ତାହାକୁ ପଞ୍ଚାୟତ କୁହାଯାଏ । ପୂର୍ବକାଳରେ ଭାରତ ମହାଦେଶରେ ସର୍ବତ୍ର ପଞ୍ଚାୟତ ପ୍ରଥା ପ୍ରଚଳିତ ଥିଲା । ରାଜା, ପ୍ରଜା ସମସ୍ତେ ପଞ୍ଚାୟତକୁ ମାନ୍ୟ କରୁଥିଲେ । ପଞ୍ଚାୟତହିଁ ଗ୍ରାମର ପଞ୍ଚଦେବତା । ନଦୁଃଖଃପଞ୍ଚଭିଃସହ । ପାଞ୍ଚରେ ମରି, ପାଞ୍ଚରେ [illegible] ପଞ୍ଚରେ ଘରଦ୍ୱାର କରି । ସେବକାଳରେ ନଗର, ପଲ୍ଲି ଇତ୍ୟାଦି ସବୁଠାରେ ପଞ୍ଚାୟତ ଥାଏ । ପଞ୍ଚାୟତ ନଥିବା ଗାଁ ନଥାଏ । ଗ୍ରାମର ମାମଲା, ମୋକଦ୍ଦମା, ହାରି ଗୁହାରି ସବୁ ପଞ୍ଚାୟତରେ ନିଷ୍ପତ୍ତି ପାଉଥିଲା । ପଞ୍ଚାୟତ ଅଦାଲତରେ ଏତେ ପର୍ଯ୍ୟନ୍ତ ମିଥ୍ୟାସାକ୍ଷ୍ୟ, କୃତ୍ରିମ କଳାପ, ଛନ୍ଦ କପଟ ଚଳୁ ନଥିଲା । ଓକିଲମାନଙ୍କର କୁତର୍କ କରି କଳାକୁ ଧଳା, ଧଳାକୁ କଳା କରି ଦେଖାଇବା ଅବକାଶ ନଥିଲା । ଅନେକ ସମୟରେ ନିଜର ଦେଖା ଶୁଣା ଓ ଅଙ୍ଗେ ନିଭାଇବା କଥା ଅନୁସାରେ ବିନା ଧନ ବ୍ୟୟରେ ନ୍ୟାୟ ନିଷ୍ପତ୍ତି କରାଯାଉଥିଲା । ଇଂରାଜ ସରକାରଙ୍କ ଅଦାଲତ କୋର୍ଟ ବସିବାଦିନୁ ଦେଶର ପଞ୍ଚାୟତ ପ୍ରଥା ଲୁପ୍ତ ହେବାକୁ ଲାଗିଲା । ମିଥ୍ୟା ସାକ୍ଷ୍ୟ ଜାଲସନ୍ତକ ପ୍ରଚଳିତ ହେଲା, ଅଯଥା ଏବଂ ଅତିରିକ୍ତ ଧନବ୍ୟୟ ପୁଣି ସମୟ ଓ ଶକ୍ତିର ଅପଚୟ ହେଲା । ସମାଜରେ ରାଗ, ଦ୍ୱେଷ ହିଂସା ପ୍ରବଳ ହେଲା ଏବଂ ଲୋକଙ୍କର ଦାରିଦ୍ର୍ୟ ଓ ଅନୈକ୍ୟଭାବମାନ ବଢିବାକୁ ଲାଗିଲା । ବ୍ରିଟିଶ୍ ସରକାରଙ୍କର ଏହି ଅଦାଲତ ବ୍ୟବସ୍ଥା ଭାରତ ପକ୍ଷରେ ଅତି ଏକ ଘୋର ଅଭିଶାପ ବୋଲି କହିବାକୁ ହେବ । ଏହାର ସଂସ୍କରଣ ବା ନିରାକରଣ ଏକାନ୍ତ ଆବଶ୍ୟକ । ଦେଶର ଦୁରବସ୍ଥା ଘୁଞ୍ଚାଇବାକୁ ହେଲେ ସର୍ବତ୍ର ପଂଚାୟତ ସ୍ଥାପନ ଏକାନ୍ତ ବାଞ୍ଛନୀୟ ।

ପଞ୍ଚାୟତ କେବଳ ସ୍ୱରାଜ୍ୟର ଭିତ୍ତିମୂଳ । ଯେପର୍ଯ୍ୟନ୍ତ ଗ୍ରାମପଂଚାୟତରେ ଲୋକଙ୍କର ଆସ୍ଥା ଜନ୍ମେ ନାହିଁ, ପଂଚାୟତ ପ୍ରତି ଭୟ ଭକ୍ତି ନାହିଁ, ସେ ପର୍ଯ୍ୟନ୍ତ ସ୍ୱରାଜ୍ୟ ପ୍ରତିଷ୍ଠା ସହଜ ସାଧ୍ୟ ନୁହେ । ଗ୍ରାମର ପଂଚଦେବତା ସ୍ୱରୂପ ଗ୍ରାମପଂଚାୟତକୁ ଆରାଧନା କଲେ ଦେଶରେ ସୁଖ ଶାନ୍ତି ବିରାଜିତ ହୁଏ । ଅତଏବ ସର୍ବପ୍ରଥମେ ଗ୍ରାମପଞ୍ଚାୟତ ସ୍ଥାପନ କରିବାକୁ ହେବ ।

ମାମଲା ମକଦ୍ଦମା, ଦାବା ଦରବାରରେ, କୋର୍ଟ କଚେରି, ପୋଲିସ୍ ଆଦିରେ ଯେତେ ଧନ ବୃଥା ବ୍ୟୟ ହୁଏ, ଯେତେ କାୟ କ୍ଲେଶ ଓ ମନୋବେଦନା ଭୋଗ କରିବାକୁ ହୁଏ, ସାହିପଡ଼ିଶାରେ ଭାଇଭାଇ ମଧ୍ୟରେ ଯେତେ ଦ୍ୱେଷ ହିଂସା କରିବାକୁ ହୁଏ, ଯେତେ ମିଥ୍ୟା ସାକ୍ଷ୍ୟର ଯୋଗାଡ଼ କରିବାକୁ ହୁଏ, ତହିଁରୁ ନିସ୍ତାର ପାଇବାକୁ ପ୍ରଜାମାନଙ୍କ ପକ୍ଷରେ ପ୍ରକୃତ ସ୍ୱରାଜ୍ୟ । ଏଥିରେ ସର୍କାର ସହିତ ଦ୍ୱନ୍ଦ କଳହ ନାହିଁ, ବରଂ ସରକାରଙ୍କର ସାହାଯ୍ୟ କରିବାକୁ ହୁଏ । ଗ୍ରାମେଗ୍ରାମେ ପଂଚାୟତ ଯେତେ ବସିବ, ଦେଶରେ ସୁଖଶାନ୍ତି ଧନ ଜନ ସେତେ ବଢ଼ିବ ।

## ଅଦାଲତର ଅପକାରିତା

ଦାବା ଦରବାର ମାମଲା ମକଦ୍ଦମାରେ ଅନେକ ଧନ ବୃଥା ଖର୍ଚ୍ଚ ହୋଇଯାଏ । ହୁଏତ, ୫ ୫୦ର ଦାବାରେ କୋର୍ଟଫିସ୍, ଓକିଲଫିସ୍, ସାକ୍ଷୀ, ଭତ୍ତା ଇତ୍ୟାଦିରେ ସମୟେ ସମୟେ ଏକଶତ ପର୍ଯ୍ୟନ୍ତ ଖରଚ ହୁଏ । ପ୍ରକାଶ୍ୟ ଖରଚ ବାହାର ଅନେକ ପ୍ରକାର ଗୁପ୍ତ ଖରଚ ମଧ୍ୟ କରିବାକୁ ହୁଏ । ଲାଞ୍ଚବୋଲ, ପାରିତୋଷିକ ବୋଲ, ଅଗ୍ରା ଖୁଆ ବା ପାନ ଖରଚ ବୋଲ ପାଇକଠାରୁ ହାକମ ପର୍ଯ୍ୟନ୍ତ ଅନେକ ସମୟରେ ଅନେକ ଅମଲା ମାନଙ୍କୁ ନାନା ଉପଚାର ଭ ଚୂଡ଼ା ନକଲେ ଅଦାଲତରେ ଆଦୌ ପ୍ରବେଶ କରିହୋଇପାରେନାହିଁ । ଅଦାଲତରେ ପଶିଲେ, ଓକିଲ ଫାନ୍ଦରେ ପଡ଼ିଲେ, ତହିଁରୁ ଆଉ ନିସ୍ତାର ନାହିଁ । ଯେଉଁ ମକଦ୍ଦମାଟା ଆମଗାଁ ପଂଚାୟତରେ ୪ । ୫ ଦିନରେ ଛିଡ଼ନ୍ତା, ସେହିଦାବାଟା ଡିଜିଟ୍‌ ପାଞ୍ଚବର୍ଷ, କେବେ କେବେ ଜୀବନଯାକ କିଂବା ପୁତନାତି ପର୍ଯ୍ୟନ୍ତ ଗଡ଼ୁଥାଏ । ଦିନନାହିଁ, ରାତିନାହିଁ, ଖରାନାହିଁ, ବର୍ଷାନାହିଁ ଆପଣାର ସବୁ କାମ ଧାମ ଛାଡ଼ି ଅଠକୁଅର ୨୫ । ୫୦ କୋଶ ରାସ୍ତା ଚାଲି କୋର୍ଟକୁ ଯିବାକୁ ହୁଏ, ସାକ୍ଷିମାନଙ୍କୁ ଖୁଆଇ ପିଆଇ, ଖୋସାମତ କରି ଶଗଡ଼ଉପରେ ବସାଇ ସାଂଗରେଧରି ନେବାକୁହୁଏ । ପୁଣି ସେଠାରେ ପାଇକ ପେଲିସ୍, ଚାକର ବାକର, ମୁନସି, ଗୁମାସ୍ତା ଇତ୍ୟାଦି ଛୋଟ ବଡ଼ କେତେ ଲୋକଙ୍କୁ କେତେ ଅନୁସରଣ କରିବାକୁ ହୁଏ, ଫଜତ ଶୁଣି ଇଜତ ହରାଇବାକୁ ହୁଏ, ପୁଣି କେତେ ଠେଣା ଓଟରା ଧୋସର ଖାଇବାକୁ ହୁଏ । ଏହିପରି କେତେ ଅପମାନ ସହିବାକୁ ହୁଏ । ପରିଶେଷରେ ମିଛ ହେଉ, ସତହେଉ ସାକ୍ଷ୍ୟ ଉପରେ ନିର୍ଭର କରି ନଥିବା ଉପର ଅଧିକାରୀର କାଏଦା ଅନୁସାରେ ବିଗୁରକର୍ତ୍ତା କଲମ ଗୋଟାଏ ଗାର ପକାଇଦିଅନ୍ତି । ତାହାହିଁ ଆସାମୀର ଅଦୃଷ୍ଟ ! ସବୁ ଧନ ଖରଚ ବୃଥା ହୁଏ, ପରିଶ୍ରମ ପଣ୍ଡ ହୁଏ, ସତଟା ମିଛ ଏବଂ ନ୍ୟାୟଟାଅନ୍ୟାୟ ହୁଏ, ନଥିବା ଯଦି ଦୈବାତ୍ ସତ୍ୟ ପକ୍ଷରେ

ଓକ୍ରୁ ହୁଏ, କେବଳ ଫମ୍ପାଓଙ୍କ ଠାଏ ମିଳିଥାଏ । ୫୦ ଟଙ୍କାର ମକଦ୍ଦମାରେ ଶଏ ଟଙ୍କା ଖରଚ ହୋଇଥାଏ, ଅନ୍ୟପ୍ରକାର ଅନେକ ନୋକସାନ ହେବାକୁ ହୁଏ । ଘରେ ଘରେ ବଇରେ ବଇର ହୋଇ ତାଙ୍କୁ ପଣତରୁ ସବୁସାର ବହୁକଷ୍ଟରେ ଦିନ କାଟିବାକୁ ହୁଏ । ଯଦିବା କେତ୍ତେଲୋକ ମକଦ୍ଦମାରେ ଜପୁଲାଭ କରି ଜମି ବାଡ଼, ଧନ ଦଉଲତ କରିଛୁ, ଦେଖିବାସେ, ସେହିଲୋକ ଅନେକ ନିରାହ ଗରିବ ଲୋକର ଘର ବୁଡାଇ ନିଜର ଫକାରର ଛାଆଣ କରିଅଛୁ । ଦଶ କେ ଓଏ କଣ୍ଠକୁଡ଼ଆ ଭଙ୍ଗା ନ ହେଲେ ଗୋଟିଏ ଚକା କୋଠା ତଆର ହୋଇପାରେ ନାହିଁ । ଧର୍ମ ରାଜ୍ୟରେ ଏହି ଡାଲଘର ନେକତୋଦନ ରହିବ । "ଅଧର୍ମ ବଡ଼ ବଢ଼େ ବହୁତ, ଗଲବେଳେ ଯାଏ ମୂଳ ସହିତ ।"

× × ×

ଗ୍ରାମର ଏବଂ ଲୋକଙ୍କର ସକଳ ବିଷୟ ଗ୍ରାମ ପଞ୍ଚାୟତ ବୁଝି ସୁଝି କରିବେ । ଗ୍ରାମର ବିଦ୍ୟାଳୟ, ଦେବାଳୟ, ଜଳାଶୟ, ଶ୍ମଶାନ, ରାଜମାର୍ଗ, ଗୋପଥ, ଗୋଚର, ଧର୍ମଶାଳା, ପାନ୍ଥଶାଳା ଇତ୍ୟାଦିର ସୁରକ୍ଷା କରିବେ । କୃଷି, ଶିଳ୍ପ ବାଣିଜ୍ୟାଦି ବ୍ୟବସାୟ ପୁଣି ଜାତି, ନୀତି, ମତ, ଧର୍ମ, କର୍ମ ଇତ୍ୟାଦିର ତତ୍ତ୍ୱ ବୁଝି ତହିଁର ସଂସ୍କାର ଏବଂ ଉନ୍ନତି ସାଧନ କରିବେ । ଗ୍ରାମର କୋଠ ଜମି ବାଡ଼, ତୋଟା, ବଗିଚା, ବଣ, ଜଙ୍ଗଲ, ପାହାଡ଼, ଗଛ, ମାଛ ଇତ୍ୟାଦି ସୁରକ୍ଷା କରିବେ । ଏହି ସବୁ କୋଠ ସମ୍ପତ୍ତିରୁ, ଏକ ହାଟିଆ ଶିଳ୍ପ ବାଣିଜ୍ୟାଦି କାରବାରରୁ ପୁଣି ଚନ୍ଦା ଭେଟାଦିରୁ ଯେଉଁ ଧନ ଆଦାୟ ହୁଏ, ତାହାସବୁ ନିରାପଦ ରକ୍ଷାକରି ତହିଁର ଅଭିବୃଦ୍ଧି କରିବେ । ଗ୍ରାମୋନ୍ନତି ଏବଂ ଲୋକହିତ ସାଧନରେ ଉକ୍ତ ଧନ ଖରଚ କରିବେ । ଗ୍ରାମ ଲୋକଙ୍କର ହକ ଅଧିକାର, ଦେଣା, ନେଣା, ଗୃହ କଳହ, ଗାଳି କଲି, ମାରପିଟି, ଚୋରି ଲୁଚି ଇତ୍ୟାଦି ବିଚାର ଗୁହାରି ବୁଝିବେ । ଦୁଷ୍ଟକୁ ଦଣ୍ଡ ଦେଇ ଶିଷ୍ଟ ପାଳନ କରିବେ । ଅସହାୟର ସହାୟ ହେବେ । ପୁଣି ସାଧୁ, ସନ୍ଥ, ଯୋଗୀ, ବୈରାଗୀ, ଅତିଥି, ଅଭ୍ୟାଗତମାନଂକର ସତ୍କାର କରିବେ । ଗୁରୁ, ପୁରୋହିତ, ବୈଦ୍ୟ ପୁଣି ଗୌଡ଼, ଭଣ୍ଡାରି, ଧୋବା, ଜଗାଳି, ଦାଣ୍ଡାସି ଇତ୍ୟାଦି ଗ୍ରାମ କର୍ମଚାରିମାନଂକୁ ନିଯୁକ୍ତ କରିବେ । ଗ୍ରାମର ପୁଣ୍ୟ ପର୍ବ ଯାତ୍ରା, ଭୋଜି ଭାତ ଇତ୍ୟାଦି ଉତ୍ସବମାନ ଯଥାବିଧି ଚଳାଇବେ । ରାଷ୍ଟ୍ର ସଭାରେ କିଂବା ରାଜଦ୍ୱାରରେ ଗ୍ରାମର ପ୍ରତିନିଧି ସ୍ୱରୂପ ଲୋକଙ୍କର ସୁଖ ଦୁଃଖ, ଅଭାବ ଅଭିଯୋଗ, ଇଚ୍ଛା ଆକାଂକ୍ଷା ଇତ୍ୟାଦି ଜଣାଇ ତହିଁର ବିହିତ ପ୍ରତିକାର କରାଇ ପାରିବେ । ଏହିପରି ଗ୍ରାମର ସକଳ କାର୍ଯ୍ୟଭାର ଗ୍ରହଣ କରିବେ ।

# ସ୍ୱର୍ଗତ ଶ୍ରୀବତ୍ସ ପଣ୍ଡାଙ୍କ
# ଆଦର୍ଶ କର୍ମମୟ ଜୀବନ

ସ୍ୱର୍ଗତ ଶ୍ରୀବତ୍ସ ପଣ୍ଡା ଆବାଲ୍ୟରୁ ଶେଷକାଳ ପର୍ଯ୍ୟନ୍ତ ଜୀବନର ପ୍ରତ୍ୟେକ କ୍ଷେତ୍ରରେ ଆଦର୍ଶ ଜୀବନ ଅତିବାହିତ କରିଥିଲେ । ବାଲ୍ୟାବସ୍ଥାରେ ଗୁରୁଶାଳୀରେ ପଢ଼ିଲାବେଳେ ଧୀର, ସ୍ଥିର ଓ ନମ୍ର ଭାବରେ ଅବଧାନ ଓ ପିତାଙ୍କ ଆଦେଶ ଓ ଉପଦେଶ ମାନି ବିଦ୍ୟାଶିକ୍ଷା କରିଥିଲେ । ଉପନୟନ ସଂସ୍କାର ପରେ ସେ ନିଷ୍ଠାର ସହିତ ଗୃହ ଦେବତା ପୂଜା ଏବଂ ଘଣ୍ଟା ଘଣ୍ଟା ଧରି ଧ୍ୟାନରେ ବ୍ୟାପୃତ ରହୁଥିଲେ । ସେଥିଯୋଗୁଁ ତାଙ୍କର ଭଉଣୀମାନେ ତାଙ୍କୁ କହୁଥିଲେ, "ବୁଢ଼ା ପରି କେତେ ଜପ ତପ କରୁଛୁ, ଖାଇବା ପିଇବା ମଧ୍ୟ ଭୁଲିଯାଉଛୁ" ଇତ୍ୟାଦି ଇତ୍ୟାଦି ।

ଗ୍ରାମ ପାଠଶାଳା ଶିକ୍ଷା ଶେଷ କରି ସେ ରସୁଲକୋଣ୍ଡା (ଭଞ୍ଜନଗର) ଇଂରାଜୀ ବିଦ୍ୟାଳୟରେ ଯୋଗ ଦେଲେ । ସେଠାରେ ମଧ୍ୟ ସେ ପ୍ରତ୍ୟେକ ଶ୍ରେଣୀରେ ପ୍ରଥମସ୍ଥାନ ଅଧିକାର କରି ସରକାରୀ ବୃତ୍ତିଲାଭ କରିଥିଲେ । ସେ ସେହି ସମୟରେ ବଜ୍ରଶୃଙ୍ଖଳମନ୍ତ୍ର ଜପ କରୁଥିଲେ ଏବଂ ସେଥିଯୋଗୁଁ ସେ ଯାହା ଥରେ ପଢ଼ୁଥିଲେ, ତା' ମନେ ରହିଯାଉଥିଲା ବୋଲି ଭାବୁଥିଲେ; କିନ୍ତୁ ପରବର୍ତ୍ତୀକାଳରେ ତାଙ୍କର ଏ ଧାରଣା ପରିବର୍ତ୍ତନ ହୋଇଥିଲା । ବାଲ୍ୟକାଳର ମାନସିକ ଏକାଗ୍ରତା ଦ୍ୱାରା ଏପରି ସ୍ମରଣଶକ୍ତି ବିକାଶ ହୋଇଥିଲା ମନ୍ତ୍ର ପ୍ରଭାବରୁ ନୁହେଁ ବୋଲି ସେ ତାଙ୍କ ଆତ୍ମଜୀବନୀରେ ପ୍ରକାଶ କରିଛନ୍ତି ।

ରସୁଲକୋଣ୍ଡାରେ ଶିକ୍ଷା ଶେଷକରି ସେ ବ୍ରହ୍ମପୁର ଯାଇଥିଲେ । ବ୍ରହ୍ମପୁରରେ ସେ ହିନ୍ଦୁ ଛାତ୍ରାବାସରେ ରହୁଥିଲେ । ଆଦର୍ଶ ଶିକ୍ଷକ ଭଗବାନ ରଥ ସେଠାରେ ରହୁଥିବା ଛାତ୍ରମାନଙ୍କର ତତ୍ତ୍ୱାବଧାରକ ଥିଲେ । ସେ ଜଣେ ଉଚ୍ଚ ଧରଣର ବ୍ୟକ୍ତି । ସ୍କୁଲପାଠ ଛଡ଼ା ସେ ନାନାପ୍ରକାର ନୀତି ଶିକ୍ଷା ଦାନ କରୁଥିଲେ । ପଣ୍ଡାବାବୁ ତାଙ୍କପ୍ରତି ବିଶେଷ ଅନୁରକ୍ତ ଥିଲେ ଏବଂ ତାଙ୍କଠାରୁ ସତ୍‌ଶିକ୍ଷା, ସଦାଳାପ ଲାଭ କରି ନିଜ ଜୀବନ ଗଠନ କରିବାରେ ବ୍ରତୀ ହୋଇଥିଲେ । ବ୍ରହ୍ମପୁରରେ ପଢ଼ିବାବେଳେ ସାମାଜିକ କୁସଂସ୍କାର ପ୍ରତି ତାଙ୍କର ମନରେ ବଡ଼ ଦୁଃଖ ଜାତ ହୋଇଥିଲା ଏବଂ ସେ ସବୁ ଦୂର କରିବାପାଇଁ ସହପାଠୀମାନଙ୍କ ମଧ୍ୟରୁ କେତେ ଜଣଙ୍କୁ ସାଙ୍ଗରେ ନେଇ ନିକଟସ୍ଥ ଗ୍ରାମମାନଙ୍କରେ ନାନା

ପ୍ରକାର କୁସଂସ୍କାର ବିରୁଦ୍ଧରେ ପ୍ରଚାର କରୁଥିଲେ ଏବଂ ସେ ସମୟରେ ପ୍ରକାଶିତ ସାପ୍ତାହିକ ଓ ମାସିକ ପତ୍ରିକାମାନଙ୍କରେ ଲେଖାମାନ ପ୍ରକାଶ କରୁଥିଲେ ।

ବ୍ରହ୍ମପୁର ଶିକ୍ଷା ଶେଷକରି ସେ ବି. ଏ ପଢିବା ପାଇଁ ରାଜମହେନ୍ଦ୍ରୀ ଯାଇଥିଲେ । ସେଠାରେ ଦର୍ଶନ ଶାସ୍ତ୍ରରେ ବଡ଼ କୃତିତ୍ୱର ସହିତ ଉନ୍ନତ ଲାଭ କରିଥିଲେ । ସେଠାରେ ଥିବା ଅଧ୍ୟାପକମାନେ ତାଙ୍କର ବୁଦ୍ଧି ମତ୍ତାରେ ସନ୍ତୁଷ୍ଟ ହୋଇ ସେ ଜଣେ ଦର୍ଶନ ଶାସ୍ତ୍ରରେ ଉତ୍ତମ ଛାତ୍ର ବୋଲି ପ୍ରଶଂସା କରୁଥିଲେ ।

ବି: ଏ ପାସ କରି ଆସି ନିଜଗ୍ରାମ ମଧ୍ୟରେ କେତେକାଳ କଟାଇ ଥିଲେ । ସେ ସମୟରେ ତାଙ୍କ ପରିବାର ବିଭକ୍ତ ହେଲେ । ଭାଇ ଭାଇମାନଙ୍କ ମଧ୍ୟରେ ବିଭାଜନ ନେଇ ନାନାପ୍ରକାର କଳହ ଉପୁଜିଲା । ସେତେବେଳେ ଅସନ୍ତୁଷ୍ଟ ଭାଇମାନଙ୍କୁ ନିଜ ଭାଗରୁ କେତେକ ଜମି ଦେଇ ବିବାଦ ମେଣ୍ଟାଇ ଦେଇଥିଲେ ।

ଆଜକାଲିର ପାଠ ପଢ଼ିଲେ ତ ଚାକିରି କରିବାକୁ ହେବ । ସ୍ୱାଧୀନ-ଚେତା ପଣ୍ଡାବାବୁ ଛତ୍ରପୁର କଲେଜରେ କରେଣ୍ଟରେ ଜଣେ କିରାଣି ରୂପେ ନିଯୁକ୍ତ ହେଲେ । କିନ୍ତୁ ଅଳ୍ପକେତେ ଦିନ ପରେ ଚାକିରିର ତିକ୍ତତା ଆସ୍ୱାଦନ କରି ଇସ୍ତଫା ଦେଇ ଚାଲିଆସିଲେ ।

ଏହା ପୂର୍ବରୁ ସେ କେତେଥର ସବ୍ ରେଜିଷ୍ଟ୍ରାର କାମ ପାଇଁ ଆବେଦନ କରିଥିଲେ । ସେଥିପାଇଁ ତାଙ୍କୁ ଡାକରା ହେଲା । ସେ ତା' ଗ୍ରହଣ କଲେ । କିନ୍ତୁ ଚାକିରିରେ ପ୍ରବେଶ କରିବା ପୂର୍ବରୁ ସ୍ୱାଧୀନ ଭାବରେ ଲାଞ୍ଚ ଗ୍ରହଣ ନକରି ନ୍ୟାୟ ଭାବରେ କପରି ଚାକିରି କରିବେ ସେଥିପାଇଁ ସଂକଳ୍ପବଦ୍ଧ ହୋଇ ଚାକିରିରେ ପ୍ରବେଶ କଲେ । ଏହି ସବ୍ ରେଜିଷ୍ଟ୍ରି ଚାକିରି ସମୟରେ ସେ ଦେଶର ମଙ୍ଗଳ ସକାଶେ ନାନା କାର୍ଯ୍ୟ କରି ଯାଇଅଛନ୍ତି ।

ସେ ଗଞ୍ଜାମର ପ୍ରଥମ ଡିଗ୍ରୀଧାରୀ ଗ୍ରାଜୁଏଟ୍‌ମାନଙ୍କ ମଧ୍ୟରୁ ଅନ୍ୟତମ, ସେ ସମୟରେ ବ୍ରିଟିଶ ରାଜତ୍ୱ, ଗଞ୍ଜାମରେ ତେଲୁଗୁ କର୍ମଚାରୀ ମାନଙ୍କର ପ୍ରବଳ ପ୍ରଭାବ, କର୍ମଚାରୀମାନେ ନାନା ହୀନ ଉପାୟରେ ଉପରିସ୍ଥ କର୍ମଚାରୀମାନଙ୍କୁ ସନ୍ତୋଷ କରି ଉଚ୍ଚତର ପଦରେ ଉନ୍ନୀତ ହେବା ପାଇଁ ଚେଷ୍ଟା କରୁଥିଲେ । ଏବେସୁଦ୍ଧା ଆମର ଦେଶ ସ୍ୱାଧୀନ ହେଲାପରେ ତଳ କର୍ମଚାରୀମାନେ କପରି ଉପରିସ୍ଥ କର୍ମଚାରୀଙ୍କୁ ଷୋଡ଼ଶୋପଚାରରେ ସେବାକରି ଦାସ ମନୋବୃତ୍ତି

ଦେଖାଉଛନ୍ତି ତା' କାହାରି ଅବିଦିତ ନାହିଁ । ନିରୀହ ଗରିବ ଗ୍ରାମବାସୀଙ୍କଠାରୁ ଲାଞ୍ଚ ଗ୍ରହଣ ତ ଆଜିକାଲି ଏକ ମାମୁଲି କଥା ହୋଇଛି ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ମନ୍ତ୍ରୀମାନଙ୍କଠାରୁ ଆରମ୍ଭ କରି ସମସ୍ତ ସରକାରୀ କର୍ମଚାରୀ କେବଳ ଲାଞ୍ଚ, କଳାବଜାର, ମିଥ୍ୟା, ପ୍ରବଞ୍ଚନାରେ ବୁଡ଼ି ରହିଛନ୍ତି । ଏହି ସମୟରେ ଶ୍ରୀବତ୍ସ ପଣ୍ଡାଙ୍କ ପରି ଆଦର୍ଶ ସରକାରୀ କର୍ମଚାରୀଙ୍କ କଥା ମନେପଡ଼େ ।

ଉପରିସ୍ଥ କର୍ମଚାରୀଙ୍କୁ ତୋଷଣ କରିବା କଥା ତେଣେ ଥାଉ । ସେମାନେ ପଣ୍ଡାବାବୁଙ୍କ ଅଫିସ ପରିଦର୍ଶନରେ ଆସିଲେ, ସେ ସେମାନଙ୍କୁ ଯାଇ ଅଭିବାଦନ ସୁଦ୍ଧା ଜଣାଉ ନଥିଲେ । ଚପରାସୀ ଦ୍ୱାରା କେବଳ ତାଙ୍କର ରହିବା ସ୍ଥାନ ବ୍ୟବସ୍ଥା କରାଉଥିଲେ. ଅଫିସରେ କେବଳ ଅଫିସ କାର୍ଯ୍ୟକାଳ ମଧ୍ୟରେ ଉପରିସ୍ଥ କର୍ମଚାରୀଙ୍କ ସହ ତାଙ୍କ ଦେଖା । ଉପରିସ୍ଥ କର୍ମଚାରୀ ଯଦି କେବେ ୫ ଘଣ୍ଟା ପରେ କୌଣସି ବାକିକାମ ଶେଷ କରିବାକୁ ବସନ୍ତି ପଣ୍ଡାବାବୁ ଠିକ୍ ୫ଟା ବେଳେ ଉଠି ଚାଲି ଯାଆନ୍ତି । ଆବଶ୍ୟକ ସ୍ଥଳେ କିରାଣିମାନେ କାମ ତୁଲାଇଥାନ୍ତି ।

ସବ୍ ରେଜିଷ୍ଟ୍ରି କଚେରୀମାନଙ୍କରେ ଦସ୍ତାବିଜ ରେଜିଷ୍ଟ୍ରି କରାଇବା ପାଇଁ ସାଧାରଣତଃ ଲାଞ୍ଚ ନେଉଥିବା କୁଖ୍ୟାତି ଅଦ୍ୟାପି ରହିଛି । ପଣ୍ଡାବାବୁ ସେଥିପାଇଁ ନିଜେ ସବୁ ଦସ୍ତାବିଜ ସଂଶୋଧନ କରୁଥିଲେ ଏବଂ ସ୍ତ୍ରୀ, ଦୂର ସ୍ଥାନାଗତ କ୍ରମରେ ଦସ୍ତାବିଜମାନ ଚିହ୍ନିତ କରି ରେଜିଷ୍ଟ୍ରି କରୁଥିଲେ । ଫଳରେ କିରାଣି ବା ଚପରାସି ସୁଦ୍ଧା କୌଣସି ଉତ୍କୋଚ ଗ୍ରହଣ ସୁବିଧାରୁ ବଞ୍ଚିତ ହେଉଥିଲେ ସେ କେବେହେଲେ ନିଜ, ପର, ବଡ଼ ଲୋକ, ସାନ ଲୋକ ପକ୍ଷପାତ ବିଚାର କରୁ ନଥିଲେ । ଥରେ ସେ ବ୍ରହ୍ମପୁର ସବରେଜିଷ୍ଟ୍ରାର ଥିବା ବେଳେ ବଡ଼ଖେମଣ୍ଡି ରାଜା ସାହେବ ଗୋଟିଏ ଦଲିଲ ରେଜିଷ୍ଟ୍ରି କରିବାକୁ ଆସିଥିଲେ । ରାଜାଙ୍କ ସହ ତାଙ୍କର ଆଗରୁ ପରିଚୟ ନଥିଲା । ସେ ସେଥିପାଇଁ ତାଙ୍କୁ ଉଚିତ ଆସନ ଦେଇ ନଥିଲେ ଏବଂ ଅପରିଚିତ ଥିବା ଯୋଗୁଁ ଦଲିଲ୍‌ରେ ଟିପଚିହ୍ନ ଦେବାକୁ କହିଥିଲେ ରାଜା ବାଧ୍ୟ ହୋଇ ଟିପଚିହ୍ନ ଦେଇଥିଲେ ଏବଂ ପରେ ଜିଲ୍ଲା କଲେକ୍ଟରଙ୍କୁ ଏ ବିଷୟରେ ରିପୋର୍ଟ କରିଥିଲେ । କଲେକ୍ଟର ଏ ବିଷୟରେ ପଣ୍ଡା ବାବୁଙ୍କ କୈଫିୟତ ନେଇଥିଲେ ଏବଂ ସେ ସେଥିର ଉଚିତ ଜବାବ ଦେଇଥିଲେ ।

କେତେ ଦିନପରେ ସେହି ବଡ଼ଖେମଣ୍ଡିରେ ନୂତନ ଭାବରେ ଏକ ସବ୍ ରେଜିଷ୍ଟ୍ରି ଅଫିସ୍ ଖୋଲାଗଲା ଏବଂ ପଣ୍ଡାବାବୁଙ୍କୁ ସେଠାରେ ନିଯୁକ୍ତ କରାଗଲା ।

ରାଜାଙ୍କର ଚ ଆଗରୁ ରହିଥିଲା । କିନ୍ତୁ ପଣ୍ଡାବାବୁ ସେଠାକୁ ଯାଇ ସେଠାରେ ଭଦ୍ରବ୍ୟକ୍ତି ମାନଙ୍କ ସହ ନାନା ପ୍ରକାର ଦେଶହିତକର କାର୍ଯ୍ୟ କରିଲେ । ପାଠାଗାର ସ୍ଥାପନ, ବାଳିକା ମାନଙ୍କ ଶିକ୍ଷା ବ୍ୟବସ୍ଥା, ସଡ଼କ ତିଆରି ଇତ୍ୟାଦି ଅନେକ କାମ କଲେ । ରାଜ ଦରବାର ଅନେକ ପଣ୍ଡିତ ତାଙ୍କର ଶିଷ୍ୟ, ବନ୍ଧୁ ହୋଇଗଲେ । ଇତି ମଧ୍ୟରେ ରାଜାଙ୍କର ଅନେକ ଗ୍ରାମ ଏ ଦଲିଲ ଭୂମିଭାଗ ନେଇ ରେଜିଷ୍ଟ୍ରି କରିବା ସମୟ ଆସିଲା । କିନ୍ତୁ ସ୍ତ୍ରୀ ବାନ୍ଧୁ ଦୁରାଗତ କ୍ରମରେ ରେଜିଷ୍ଟ୍ରି କରୁ କରୁ ରାଜାଙ୍କର ଦଲିଲ ସବୁ ବାକିପଡ଼ିଲା । ଏଥିରେ ରାଜାଙ୍କର ଭାରେଣି ପଡ଼ିଲା । ତାଙ୍କୁ କୌଣସି ମତେ ପୁରସ୍କାର ଇତ୍ୟାଦି ଦେଇ ସନ୍ତୋଷ କରିବା ସ୍ଥିର ହେଲା । ଶେଷରେ ତାଙ୍କୁ ଏକ ମୂଲ୍ୟବାନ ଘଡ଼ି ପଠାଗଲା । ସେ ସରକାରୀ କର୍ମଚାରୀ ଭାବରେ ଏପରି ପୁରସ୍କାର ଗ୍ରହଣ କରିବା ଆଇନ ବିରୁଦ୍ଧ କହି ମନାକଲେ । ତାପରେ ରାଜ ପରିଷଦରେ ସ୍ଥିର ହେଲା ଯେ, ଗୋଟିଏ ସାଂସ୍କୃତିକ ସଭା କରି ତାଙ୍କର ପ୍ରବନ୍ଧ ସକାଶେ ପୁରସ୍କାର ଦିଆଯିବ । ସେ ଅନୁସାରେ ଏକ ସଭାହେଲା । ସେଥିରେ ତାଙ୍କର ଏକ ଭାଷଣ ପାଇଁ ଉକ୍ତ ପୁରସ୍କାର ଘୋଷଣା କରାଗଲା । କିନ୍ତୁ ସେ ତା' ଗ୍ରହଣ ନକରି ଉପରିସ୍ଥ କର୍ମଚାରୀଙ୍କୁ ଏପରି ଏକ ପୁରସ୍କାର ଗ୍ରହଣ କରିବା ଉଚିତ ହେବ କି ନାହିଁ ବୋଲି ପରାମର୍ଶ ଲୋଡ଼ିଲେ । ସେପରି ପୁରସ୍କାର ଗ୍ରହଣ କରିବା ପାଇଁ ତାଙ୍କୁ ଅନୁମତି ମିଳି ଥିଲା । ଆଜି କାଲିର ଏ ସ୍ୱାଧୀନ ଯୁଗରେ ଆମ ମନ୍ତ୍ରୀମାନଙ୍କର ସିରାଜଉଦ୍ଦିନ୍ ଇତ୍ୟାଦି କମ୍ପାନୀଙ୍କ ସହ କାରବାର ଏଥିସହିତ ତୁଳନୀୟ ।

ଗଞ୍ଜାମ ଜିଲ୍ଲାର ବିଭିନ୍ନ ସ୍ଥାନରେ ସେ ସବ୍‌ରେଜିଷ୍ଟ୍ରାର ଥିବାବେଳେ ପରଜାତି ଜଞ୍ଜାଳ ପ୍ରତି ଭ୍ରୂକ୍ଷେପ ନକରି ସେ ନାନା ଦେଶହିତକର କାର୍ଯ୍ୟ କରି ଯାଇଛନ୍ତି । ଗଞ୍ଜାମରେ ପ୍ରଥମ କରି ସେ ସ୍ତ୍ରୀ ଶିକ୍ଷା ପ୍ରସାର ଉଦ୍ଦେଶ୍ୟରେ ବିଭିନ୍ନ ସ୍ଥାନରେ ବାଳିକା ବିଦ୍ୟାଳୟମାନ ସ୍ଥାପନ କରିଥିଲେ । ସେଥିପାଇଁ ତାଙ୍କୁ ରକ୍ଷଣଶୀଳ ଲୋକଙ୍କଠାରୁ ଲାଞ୍ଛନା ଓ ନିର୍ଯ୍ୟାତନା ଭୋଗ କରିବାକୁ ପଡ଼ିଥିଲା । ସ୍କୁଲ ଘର ତିଆରି ଶିକ୍ଷକମାନଙ୍କ ଦରମା ପ୍ରଥମେ ପ୍ରଥମେ ସେ ନିଜେ ବହନ କରୁଥିଲେ ଏବଂ ପିଲାମାନଙ୍କୁ ପାଠଶାଳାକୁ ଆସିବା ପାଇଁ ପ୍ରଲୋଭିତ କରିବାକୁ ମିଠାଇ ଓ ନାନା ପ୍ରକାର ଖେଳଣା ନିଜ ଖର୍ଚ୍ଚରେ ଆଣି ଦେଉଥିଲେ ।

ବିଧବା ବିବାହ ପ୍ରବର୍ତ୍ତନ ତାଙ୍କର ଏକ ବଡ଼ କାର୍ଯ୍ୟ । ପାର୍ଲାଖେମୁଣ୍ଡିରେ ଥିବାବେଳେ ଜଣେ ବିଧବା କନ୍ୟାକୁ ଆଣି ଘରେ ପୋଷି, ଜଣେ ବରପାତ୍ର ଠିକ୍ କରି ଉଭୟଙ୍କ ସକାଶେ ନିଜ ଜମିରୁ କିଛି ଦାନ କରି ମହା ଆଡ଼ମ୍ବର

ସହକାରେ ବିବାହ କରାଇଥିଲେ । ରକ୍ଷଣଶୀଳ ବ୍ରାହ୍ମଣମାନେ ସେଥିପାଇଁ ତାଙ୍କୁ ମାରଧର କରିବା ପର୍ଯ୍ୟନ୍ତ ଯାଇଥିଲେ । ସେ ମୋକ୍ଷଦ ସାହାଯ୍ୟ ଲୋଡ଼ି ଏ ବିବାହ ସମ୍ପନ୍ନ କରାଇଥିଲେ । 'ଶିଶିକଳା ପରିଣୟ' ନାମକ ବିଧବା ବିବାହ ସଂପର୍କୀୟ ଏକ ନାଟକ ସ୍ୱୟଂ ରଚନା କରି ବିଭିନ୍ନ ରଙ୍ଗମଞ୍ଚରେ ଅଭିନୟ କରାଇଥିଲେ ଏବଂ ସେଥିପାଇଁ ରକ୍ଷଣଶୀଳ ବ୍ରାହ୍ମଣମାନଙ୍କଠାରୁ ନାନାପ୍ରକାର ପରିଭବ ପାଇଥିଲେ ।

ବ୍ରହ୍ମପୁରଠାରେ ସବ୍‌ରେଜିଷ୍ଟ୍ରାର ଥିବାବେଳେ ୧୯୦୧ ସାଲରେ ସେ ପଣ୍ଡିତ ଶ୍ରୀ ନୀଳମଣି ବିଦ୍ୟାରତ୍ନ ଓ ଶ୍ରୀଯୁକ୍ତ ବଳଭଦ୍ର ମହାପାତ୍ରଙ୍କ ସହ ମିଶି ବିଚାର କରି ଉତ୍କଳର ଏକ ସମ୍ମିଳନୀ କରିବା ସ୍ଥିର କଲେ ସେଥିପାଇଁ ସମସ୍ତେ ଖଲ୍ଲିକୋଟର ତତ୍କାଳୀନ ବଦାନ୍ୟ ରାଜାସାହେବ ଶ୍ରୀ ହରିହର ମର୍ଦ୍ଦରାଜଙ୍କ ପ୍ରାର୍ଥୀ ହେଲେ । ଏହି ଉଦ୍ୟମ ଫଳରେ ରମ୍ଭା ବଙ୍ଗଳାରେ ପ୍ରଥମେ ଏକ ପରାମର୍ଶ ସାହାଯ୍ୟ ସଭା ବସିଲା । କଟକରୁ ଉତ୍କଳଗୌରବ ମଧୁସୂଦନ ଏଥିକି ନିମନ୍ତ୍ରିତ ହୋଇଥିଲେ । ସମସ୍ତଙ୍କ ପରାମର୍ଶରେ ସେହିବର୍ଷ ବ୍ରହ୍ମପୁରଠାରେ ଉତ୍କଳ ସମ୍ମିଳନୀର ପ୍ରଥମ ଅଧିବେଶନ ହୋଇଥିଲା । ଉତ୍କଳ ସମ୍ମିଳନୀର ଜନ୍ମଦାତା ମାନଙ୍କ ମଧ୍ୟରୁ ଶ୍ରୀବତ୍ସବାବୁ ଅନ୍ୟତମ ।

ସେ ଉତ୍କଳ ସମ୍ମିଳନୀମାନଙ୍କର ନିୟମିତ ଭାବରେ ଯୋଗ ଦେଉଥିଲେ ଏବଂ ବିଶେଷକରି ସମାଜ ସଂସ୍କାର ସଂବନ୍ଧୀୟ ପ୍ରସ୍ତାବ ମାନ ଆଗତ କରୁଥିଲେ । ସେହି ସମୟରେ କେତେ ଜଣ ନେତୃ ସ୍ଥାନୀୟ ଲୋକ ଏହାଙ୍କ ସଂସ୍କାର ଭାବସବୁ ଉଗ୍ର ଏବଂ ଦେଶକାଳାତୀତ ବୋଲି କହି ଏହାଙ୍କ ସହିତ ଏକମତ ହୋଇପାରୁ ନଥିଲେ । ଉତ୍କଳ ସମ୍ମିଳନୀରେ ଯୋଗ ଦେଉଥିବା ଯୋଗୁ ପୁଣି ଖବର କାଗଜ ମାନଙ୍କରେ ଲେଖା ଲେଖି କରୁଥିବା ଯୋଗୁଁ ସେ ରାଜନୀତିରେ ଯୋଗ ଦେଉଛନ୍ତି ବୋଲି ଅଭିଯୁକ୍ତ ହୋଇଥିଲେ । ସେ ଅଭିଯୋଗ ମାନଙ୍କର ଯଥାଯଥ ଉତ୍ତର ଦେଇ ସେଥିରୁ ମୁକ୍ତିଲାଭ କରିଥିଲେ । ସେତେବେଳେ ଗଞ୍ଜାମର ରାଜନୀତି କେବଳ ତେଲୁଗୁ ଓଡ଼ିଆ ବିବାଦରେ ସୀମାବଦ୍ଧ ହୋଇରହିଥିଲା । ତେଲୁଗୁ ମାନେ ଇଂରାଜୀ ଶିକ୍ଷା ଆଗରୁ ଲାଭ କରି ସମସ୍ତ ସରକାରୀ କାର୍ଯ୍ୟ ମାଡ଼ିବସିଥିଲେ । ଯେଉଁ ମୁଷ୍ଟିମେୟ ଓଡ଼ିଆ ସେତେବେଳେ ପଢ଼ା ପଢ଼ି କରି ବାହାରନ୍ତି ସେମାନଙ୍କୁ ତେଲୁଗୁ ମାନେ ଘୃଣା ଚକ୍ଷୁରେ ଦେଖି ସାହେବ କର୍ମଚାରୀ ମାନଙ୍କୁ ନାନା ପ୍ରକାର ଉପାୟରେ ସନ୍ତୁଷ୍ଟ କରି ଓଡ଼ିଆମାନଙ୍କୁ ଭଲ ଭଲ କାର୍ଯ୍ୟରେ ପୂରାଇ ଦେଉ ନ ଥିଲେ । ସେତେବେଳେ ଗଞ୍ଜାମରେ ଯେଉଁ ସବୁ ଓଡ଼ିଆ ପତ୍ରିକା ବାହାରୁଥିଲା ସେଥିରେ ତେଲୁଗୁ କର୍ମଚାରୀମାନଙ୍କ ଏହି ବିଦ୍ୱେଷ ଭାବ, ପ୍ରତି

ଲକ୍ଷ୍ୟ କରି ବହୁ ଲେଖା ପ୍ରକାଶିତ ହେଉଥିଲା । ଅଧିକାଂଶ ଲେଖା ଶ୍ରୀବତ୍ସ ମଣ୍ଡାଙ୍କର । ଥରେ ତାଙ୍କର ଏକଲେଖା "କାମିନୀ କାଞ୍ଚନ କୌଶଳ କଳାପ" ସମାଜ ନିନ୍ଦନାତ୍ମକ ଏକ ସାପ୍ତାହିକ କାଗଜରେ ପ୍ରକାଶିତ ହୋଇ ସମସ୍ତ ଓଡ଼ିଶାରେ ହଲଚଲ ପକାଇ ଦେଇଥିଲା । ତେଲୁଗୁମାନେ ମାନହାନି ମକଦ୍ଦମା କରିଥିଲେ । ଫଳରେ ପତ୍ରିକା ସଂପାଦକଙ୍କୁ ଏକଶହ ଟଙ୍କା ଜରିମାନା ହୋଇଥିଲା ।

ସେ ତାଙ୍କର ସରକାରୀ କାର୍ଯ୍ୟକାଳରେ ଶିକ୍ଷାର ଉନ୍ନତି ସାଧନ ବିଶେଷତଃ ସ୍ତ୍ରୀ ଶିକ୍ଷା ପାଇଁ ନାନାସ୍ଥାନରେ ବିଦ୍ୟାଳୟମାନ ସ୍ଥାପନ କରିଥିଲେ । ବେଲଗୁଣ୍ଠା, ବଡଖେମଣ୍ଡି, ପୁରୁଷୋତ୍ତମପୁର, ଆସିକା ପ୍ରଭୃତି ସ୍ଥାନରେ ବର୍ତ୍ତମାନ ଥିବା ବାଳିକା ବିଦ୍ୟାଳୟ ଗୁଡ଼ିକର ସେ ପ୍ରତିଷ୍ଠାତା ଥିଲେ । ଆସିକାରେ କୃଷ୍ଣ ସିଂହ ପାଠାଗାର ସ୍ଥାପନ କରିବାରେ ସେ ପ୍ରଥମେ ଉଦ୍ୟମ କରିଥିଲେ ଏବଂ ଅନ୍ୟାନ୍ୟ କେତେକ ବନ୍ଧୁଙ୍କ ସହ ଧରାକୋଟ ରାଜାଙ୍କୁ ସେଥିପାଇଁ ପ୍ରେରଣା ଦେଇ ତାଙ୍କଠାରୁ ଆର୍ଥିକ ସାହାଯ୍ୟ ଲାଭ କରିଥିଲେ ।

ସାମାଜିକ କୁସଂସ୍କାର ଓ କୁରୀତି ଦୂର କରିବା ପାଇଁ ସେ ଆଜୀବନ ଅକ୍ଲାନ୍ତ ପରିଶ୍ରମ କରି ଯାଇଅଛନ୍ତି । ମହାତ୍ମା ଗାନ୍ଧୀଙ୍କ ଅସ୍ପୃଶ୍ୟତା ନିବାରଣ ଆନ୍ଦୋଳନର ବହୁପୂର୍ବରୁ ସେ ଅସ୍ପୃଶ୍ୟତା ନିବାରଣ ପାଇଁ ନାନାଲେଖା ପ୍ରକାଶ କରିଛନ୍ତି । ବିଭିନ୍ନ ସାମାଜିକ ସଭାରେ ଯୋଗଦେଇ ପ୍ରଚାର କରିଛନ୍ତି । ତଥା କଥିତ ଅସ୍ପୃଶ୍ୟ ସମାଜର ବିଭିନ୍ନ ସଭା ସମିତିରେ ଯୋଗଦେଇ ସେମାନଙ୍କର ଆଚାର ପରିବର୍ତ୍ତନ ପାଇଁ ଉପଦେଶ ଦେଇଛନ୍ତି । ନିଜର ଅସ୍ପୃଶ୍ୟ ଭୃତ୍ୟର ଦ୍ୱାରା ଅନ୍ନାଦି ପଦାର୍ଥ ଏକ ସ୍ଥାନରୁ ଅନ୍ୟସ୍ଥାନକୁ ନେଇ ନିର୍ଦ୍ଧିକ ଏବଂ ନିଃଶଙ୍କ ଭାବରେ ଗ୍ରହଣ କରିଥାନ୍ତି । "ଅନ୍ତର ଜାତି" ନାମକ ତାଙ୍କର ଏକ ପୁସ୍ତିକାରେ ଅସ୍ପୃଶ୍ୟତା ସଂବନ୍ଧରେ ବିଶଦ ଆଲୋଚନା କରାଯାଇଛି ।

ପିତଳ ଖଡୁ ବାହି ଓଡ଼ିଆ ସ୍ତ୍ରୀମାନଙ୍କର ନାନାପ୍ରକାର ଅଳଙ୍କାର ଏବଂ ଲୁଗା ପିନ୍ଧା ପରିପାଟୀ, ବ୍ରାହ୍ମଣମାନଙ୍କର ପଣାଖିଆ, କର୍ଣ୍ଣ ଗୁରୁମାନଙ୍କର ଭଣ୍ଡାମି ଇତ୍ୟାଦି ସମସ୍ତ ପ୍ରକାର କୁସଂସ୍କାର ବିରୁଦ୍ଧରେ ସେ ଦେଶ କାଳାତୀତ ଆନ୍ଦୋଳନ କରିଥିଲେ । ବଡ ଆଶ୍ଚର୍ଯ୍ୟର କଥା ଓଡ଼ିଶାର ବିଖ୍ୟାତ ସନାତନୀ ପଣ୍ଡିତମାନେ ତାଙ୍କର ଏହି ସବୁ ସଂସ୍କାର ମୂଳକ ଆନ୍ଦୋଳନ ପ୍ରତି ନୈତିକ ଏବଂ ଶାସ୍ତ୍ରୀୟ ସାହାଯ୍ୟ ପ୍ରଦାନ କରୁଥିଲେ । ମହାମହୋପାଧ୍ୟାୟ ସଦାଶିବ କାବ୍ୟକଣ୍ଠ ତାଙ୍କର ବାଲ୍ୟବିବାହ ଆନ୍ଦୋଳନ ଦେଖି କଲ୍ୟାପଦ୍ଧର୍ମ ସବସ୍ୱରେ ବିଧବା ବିବାହ ସମର୍ଥନ କରିଛନ୍ତି ବୋଲି କହି

ତାଙ୍କର ଗୃହଠାରେ ଏକ ପଣ୍ଡିତ ସଭାରେ ଶ୍ରୀ ବକ୍ସି ବାବୁଙ୍କୁ ପଣ୍ଡିତ ଆଖ୍ୟା ପ୍ରଦାନ କରିଥିଲେ । ଗଞ୍ଜାମର ବିଖ୍ୟାତ ପଣ୍ଡିତ ଗଣ ମହାମହୋପାଧ୍ୟାୟ ଶ୍ରୀ ଗଦାଧର ବିଦ୍ୟା ଭୂଷଣ, ଶ୍ରୀ ସଦାଶିବ ବିଦ୍ୟା ଭୂଷଣ, ଶ୍ରୀ ଗୋପିନାଥ ନନ୍ଦ, ଶ୍ରୀ ଚନ୍ଦ୍ରଶେଖର ସାହିତ୍ୟ ରତ୍ନାକର ଶ୍ରୀ ନୀଳମଣି ବିଦ୍ୟାରତ୍ନ, ଶ୍ରୀହରିହର ଦାଶ, ମଧୁସୂଦନ ତର୍କ ବାଚସ୍ପତି ପ୍ରଭୃତି ତାଙ୍କର ସମସ୍ତ ପ୍ରକାର ସଂସ୍କାର ମୂଳକ କାର୍ଯ୍ୟରେ ପୂର୍ଣ୍ଣ ସହାନୁଭୂତି ଓ ସହଯୋଗ ପ୍ରଦାନ କରୁଥିଲେ । ମଠାଧୀଶ-ମାନେ ମଧ୍ୟ ସେମାନଙ୍କ ମଧ୍ୟରେ ବିରୁଦ୍ଧରେ ଲେଖାମାନ ଲେଖାଯାଉଥିଲେ ସୁଦ୍ଧା, ପଣ୍ଡା ବାବୁଙ୍କ କାର୍ଯ୍ୟରେ ଆର୍ଥିକ ସାହାଯ୍ୟ ପ୍ରଦାନ କରୁଥିଲେ ।

ତାଙ୍କର ଏହିପରି କାର୍ଯ୍ୟ କଳାପ ଦେଖି ତାଙ୍କର ଉପରିସ୍ଥ କର୍ମଚାରୀମାନେ ବିଦ୍ୱେଷ ଭାବରେ ତାଙ୍କୁ ଗଞ୍ଜାମରୁ ଅନ୍ୟ ଜିଲ୍ଲାକୁ ବଦଳି କରିଥିଲେ । ସେଥି-ଯୋଗୁଁ ସେ ସମୟ ନହୋଇ ଥିଲେ ସୁଦ୍ଧା ଚାକିରିରୁ ଇସ୍ତଫା ଦେଇଥିଲେ । ୧୯୨୧ରେ ସେ ଅସହଯୋଗ ଆନ୍ଦୋଳନରେ ଯୋଗ ଦେଇଥିଲେ ଏବଂ ଗଞ୍ଜାମ ଜିଲ୍ଲା କଂଗ୍ରେସ କମିଟିର ପ୍ରଥମ ସଭାପତିରୂପେ ଅଧିଷ୍ଠିତ ହୋଇଥିଲେ । ପଞ୍ଚାୟତ ନାମକ ପୁସ୍ତିକା ଲେଖି ଗ୍ରାମେ ଗ୍ରାମେ ପଞ୍ଚାୟତ ସ୍ଥାପନ କରିଥିଲେ । କପାଚାଷ ଓ ସୂତା କଟା ପ୍ରଚାର କରିଥିଲେ ଏବଂ ନିଜେ ଦୈନିକ ସୂତା କାଟୁଥିଲେ । କଂଗ୍ରେସ ପାର୍ଟିକୁ ନିୟମିତ ଭାବରେ ମାସିକ ଚାନ୍ଦା ଦେଉଥିଲେ । ତିଲକ ସ୍ୱରାଜ ପାଣ୍ଠିକୁ ଏକକାଳୀନ ୫୦୦ ଦାନକରିଥିଲେ । ଅସହଯୋଗ ଆନ୍ଦୋଳନ ସଂପର୍କରେ ସେ ଗୀତ ଲେଖି ଲୋକଙ୍କ ଉତ୍ସାହ ବୃଦ୍ଧି କରିଥିଲେ । ସୂତାକଟା ସଂପର୍କରେ—

‘ ଘରେ ଘରେ ଭାଇ ଅରଟ ଚଳାଅ ମାଇପେ କାଟନ୍ତୁ ସୂତା,
ଆମଦେଶ ତନ୍ତୀ ବୁଣିଦେବେ ଖଦୀ ଯିବ ଅନ୍ନ ବସ୍ତ୍ରଚିନ୍ତା ।
କୋର୍ଟ କଚେରୀ ବର୍ଜ୍ଜନ ଓ ପଞ୍ଚାୟତ ସ୍ଥାପନ ସଂପର୍କରେ—
ଉତ୍କଳ ଭାଇ ଏ ଗୁଡ଼ ଆସ ସବୁ ଫିସାଦଆ ଅଦାଲତ,
ଗ୍ରାମେ ଗ୍ରାମେ ବୁଲି ଲୋକଙ୍କୁ ବୁଝାଇ ଆପିଯାଅ ପଞ୍ଚାୟତ ।
ଉତ୍କଳ ଆଇନ ଗହନ କାନନ ନାହିଁ ମାତ୍ର ବିଚାରଣା
ସତ୍ୟ ଧର୍ମ ନାହିଁ, ଟଙ୍କାପଇସାରେ ହୁଏ ସବୁ ହରକଣା ।”

ସର୍ବୋପରି ତାଙ୍କର ସାହିତ୍ୟ ସେବା ଆଦର୍ଶ ସ୍ଥାନୀୟ । ସେ ସବୁବେଳେ ଜ୍ଞାନଚିନ୍ତା କରୁଥିଲେ ଏବଂ ନିଜର ଦୈନିକ ଆଧ୍ୟାତ୍ମିକ ସାଧନ ସମୟ ଛଡ଼ା ଆଉ ସମସ୍ତ ସମୟ କେବଳ ବିଭିନ୍ନ ବିଷୟରେ ଲେଖାମାନ ଲେଖୁଥିଲେ ।

ସେ ସର୍ବ ମୋଟ ୨୭ ଖଣ୍ଡ ପୁସ୍ତକ ପ୍ରକାଶ କରିଥିଲେ । ତା'ଛଡ଼ା ଉତ୍କଳର ପ୍ରାୟ ସମସ୍ତ ସାପ୍ତାହିକ, ଦୈନିକ ଓ ମାସିକ ପତ୍ରିକାମାନଙ୍କରେ ସାମୟିକ ଲେଖାମାନ ପ୍ରକାଶ କରୁଥିଲେ । ଜୀବନର ଶେଷକାଳ ପର୍ଯ୍ୟନ୍ତ ସେ ଅବିଶ୍ରାନ୍ତ ଲେଖନୀ ଚାଳନ କରୁଥିଲେ । କବିବର ଚିନ୍ତାମଣି ତାଙ୍କର ସୁନ୍ଦର ବାକ୍ୟରେ ଲେଖିଛନ୍ତି :

ବାର୍ଦ୍ଧକ୍ୟ ସୁଦ୍ଧା ସେ ଶକ୍ତିଧନେ ଧନୀ
ଚଳନ୍ତି ଅଶ୍ରାନ୍ତେ ଯାହାଙ୍କ ଲେଖନୀ
ନଥାଏ ଭ୍ରୂକ୍ଷେପ ଆପଦେ କଷ୍ଟେ
ସତ୍ୟଶିବ ସେବାରେ ମନୋବାକ୍ୟେ ।

ସେ ବଡ଼ ଧର୍ମ ନିଷ୍ଠ ଥିଲେ । ଯୌବନର ପ୍ରାରମ୍ଭରେ ନାନା ଧର୍ମ ପ୍ରତି ମନ ବଳାଇ ଶେଷରେ ସେ ସ୍ୱର୍ଗୀୟ ଲକ୍ଷ୍ମୀକାନ୍ତ ରାୟଙ୍କ ପରି ସ୍ୱାମୀ ଦୟାନନ୍ଦ ସରସ୍ୱତୀ ପ୍ରବର୍ତ୍ତିତ ଆର୍ଯ୍ୟଧର୍ମ ଅବଲମ୍ବନ କରିଥିଲେ ଏବଂ ଦୟାନନ୍ଦଙ୍କ ବିଖ୍ୟାତ ପୁସ୍ତକ "ସତ୍ୟାର୍ଥ ପ୍ରକାଶ" ଓଡ଼ିଆରେ ଅନୁବାଦ କରି ପ୍ରକାଶ କରିଥିଲେ । ତା' ଛଡ଼ା ବୈଦିକ ଧର୍ମ ସଂପର୍କରେ ଛୋଟ ବଡ଼ ଅନେକ ପୁସ୍ତକ ଲେଖି-ଯାଇଛନ୍ତି । ଶେଷକାଳ ପର୍ଯ୍ୟନ୍ତ ନିଷ୍ଠାର ସହିତ ଦୈନିକ ପ୍ରାତ ସାୟଂ ସଂଧ୍ୟା ହୋମ, ବଳୀବୈଶ୍ୱ ଦେବ ଉପାସନା ପ୍ରଭୃତି କରୁଥିଲେ ।

ସେ ଆର୍ଯ୍ୟ ସମାଜରେ ଥିଲେ ସୁଦ୍ଧା ଅନ୍ୟାନ୍ୟ ଧର୍ମ ପ୍ରତି ସମ୍ଭାବ ପ୍ରଦର୍ଶନ କରୁଥିଲେ ।

ଶ୍ରୀ ବାଞ୍ଛାନିଧି ପଟ୍ଟନାୟକ

# ଶ୍ରୀବହ୍ମ କଥା ରହସ୍ୟ

ଥରେ ସେ ପୁରୀଠାରୁ ତାଙ୍କର ଶିଷ୍ୟ ଶ୍ରୀ ବସୁଦେବଙ୍କ ସଙ୍ଗରେ ତାଙ୍କର ଅନ୍ୟତମ ଉଦ୍ୟାନ ନିବାସ ଛତାବରକୁ ଯିବା ପାଇଁ ଗୋବରୀ ଠାରେ ବାସରୁ ଓହ୍ଲାଇ ତାଙ୍କର ଅନ୍ୟତମ ଶିଷ୍ୟ ଶ୍ରୀ ବାଞ୍ଛାନିଧି ପଟ୍ଟନାୟକଙ୍କର ଅତିଥି ହୋଇଥିଲେ । ଖାଇବାବେଳେ ସାମାନ୍ୟ କିଛି ଆଗରୁ ଦିଆ ଯାଇଥିଲା । ତାକୁ ଦେଖାଇ "ଏହା କ'ଣ" ବୋଲି ପଚାରିଲେ । "ଆଚାର" ବୋଲି କହିବାରୁ କହିଥିଲେ— ହଁ ଆମଘରମାନଙ୍କରେ ତ ଅନାଚାର, ଅତ୍ୟାଚାର, ବ୍ୟଭିଚାର, ଦୁରାଚାର, କଦାଚାର ସବୁ ପୂର୍ଣ୍ଣ ହୋଇ ରହିଛି । ଏଥିରୁ ଟିକିଏ ଥିଲେ ଆଚାର ଅଛି ବୋଲି କହିବାକୁ ହେବ ।"

ଥରେ ଶ୍ରୀ ବାଞ୍ଛାନିଧି ପଟ୍ଟନାୟକ ତାଙ୍କଠାରୁ "ସମ୍ବଲପୁର ହିତୈଷିଣୀ" ନାମକ ଦୁଇଟି ସାପ୍ତାହିକ ପତ୍ରିକା ପଢ଼ିବା ପାଇଁ ନେଇଥିଲେ । ପତ୍ରିକାଟିମାନ ଏ ହାତରୁ ତା ହାତକୁ ହୋଇ କୁଆଡ଼େ ହଜିଗଲା । ପଣ୍ଡାବାବୁ ତାଙ୍କର ଶେଷକାଳ ପର୍ଯ୍ୟନ୍ତ ଯେବେ ସାକ୍ଷାତ ହୁଏ ସମସ୍ତ କଥାବାର୍ତ୍ତା ଶେଷରେ ବିଦାୟ ନେଇ ଖଣ୍ଡେ ଦୂର ଯିବାପରେ ବାଞ୍ଛାନିଧି ବାବୁଙ୍କୁ ଡାକି କହନ୍ତି—"ବାଞ୍ଛାନିଧି ଦୁଇଟି ପତ୍ରିକା ନେଇଥିଲ ଆଜି ଫେରାଇଲ ନାହିଁ ।" ବାଞ୍ଛାନିଧିଙ୍କୁ ସେଥିପାଇଁ ବାର ବାର ଲଜ୍ଜିତ ହେବାକୁ ପଡୁଥିଲା ।

ଥରେ ଶ୍ରୀ ବାଞ୍ଛାନିଧି ପଟ୍ଟନାୟକ ପଣ୍ଡାବାବୁଙ୍କ ନିଜଘର ମନ୍ଦାରକୁ ଯାଇଥିଲେ । ଟେବୁଲ ଉପରେ ଗୋଟିଏ ବିଶାଳ ଶାଳଗ୍ରାମ ରଖା ଯାଇଥିଲା । ଶାଳଗ୍ରାମଟିକୁ ଆଣି ତାଙ୍କ ହାତରେ ଦେଲେ, ଏବଂ କହିଲେ "କେଡ଼େ କଥା କଲ ଶାଳଗ୍ରାମଙ୍କୁ ଛୁଇଁ ଦେଲ" ତାପରେ କହିଲେ 'ଦେଖ ଏହି ଶାଳଗ୍ରାମ ଆମର ଏକ ଘର କଣେ ଗୋଟିଏ ଖଟୁଳିରେ ପଡ଼ିଥିଲେ । ଅଳିଅ ନାହିଁ, ଚନ୍ଦନ ନାହିଁ, କେତେ ଚୋଟକା ଫୁଲ, କେତେ ମୂଷା ଲେଣ୍ଡି, ଅସରପା ଲେଣ୍ଡି ଉପରେ ପଡ଼ିଥିଲା । ମୁଁ ଦେଖିଲି, ଆହା ! ଶାଳଗ୍ରାମ କିମିତି ଅବସ୍ଥାରେ ପଡ଼ିଛନ୍ତି । ତାଙ୍କୁ ସେଠାରୁ ଉଦ୍ଧାର କଲି । ଧୂଆ ଧୋଇ, ପୋଛା ପୋଛି କଲି । ଦେଖ, ଏହି ହୁକ୍କା, କାଗଜ ଉପରେ ରଖିଛି । ମୁଁ ବେଦ, ପୁରାଣ, ଇତିହାସ, ଖବର କାଗଜ ପଢ଼ି ଶୁଣାଉଛି, ଆଉ ସେ ତାର ପ୍ରତି ବଦଳରେ ମୋର ଏ କାଗଜ ଗୁଡ଼ାକ ଉଡ଼ିଯିବ ପଛ ବୋଲି ମାଡ଼ି ବସିଛନ୍ତି ।

ମନ୍ଦାରରୁ ଗାନ୍ଧୀଯୁଗର ବହୁ ପୂର୍ବ ) ଛଡ଼ାବର ଯିବାପାଇଁ ବାହାରବେ ଟିଫିନ୍ କ୍ୟାରିଅରରେ ଘିଅ ଲୁଣ ରଖି ନିଜର ଅସ୍ପୃଶ୍ୟ ଦଣ୍ଡାସି ଗୁହକର ହାତରେ ଧରାଇ ଗାଁର ବୁଢ଼ା ବୁଢ଼ା ଲୋକଙ୍କୁ ଡ଼ାକି କହିବେ, "ଏଥିରେ କ'ଣ ଅଛି ଦେଖିଛ ?" ତାଙ୍କୁ ସବୁ ଖୋଲି ଦେଖାଇବେ, ସେମାନେ ଆଶ୍ଚର୍ଯ୍ୟ ହୋଇ ପଚାରନ୍ତି, "ଏଙ୍କୁ ସବୁ ଦଣ୍ଡାସି ଧରିଛି, ଖାଇବେ ? ' ହଁ କ'ଣହେଲା । ଘିଅ ଲୁଣତ ଏହା ଭିତରେ ଅଛି । ଇଏତ ପଦାରେ ଧରିଛି । ଛୁଆଁ ତ ଏ ସବୁ ଭିତରେ କିମିତି ପଶିବ ।" ବୁଢ଼ାମାନେ ଅସନ୍ତୁଷ୍ଟ ଓ ଆଶ୍ଚର୍ଯ୍ୟ ହୋଇ ନାନା କଥା କହିଗୁଲିଯାନ୍ତି ।

ଥରେ ନାଟଗାଁ ଦାଣ୍ଡରେ ଆସୁଥିଲେ । କାଞ୍ଜି ପରଜା ବାସନା ଆସିଲା । ଦାଣ୍ଡ ମଝିରେ ଛିଡ଼ାହୋଇ କାହାର କାଞ୍ଜି ପରଜା ହେଲା ବୁଝିଲେ । ଜଣେ ଆଳିଆ ଘରର । ଟିକିଏ ଆଣିବାକୁ କହିଲେ । ପାଣି ଅଣା ହେଲା, ହାତ ଧୋଇ ସେଥିରୁ ଟିକିଏ ଚାଖି କହିଲେ "ଆରେ, ଏତ ବ୍ରାହ୍ମଣ କରଣ ଘର ପାକ ଭଳିଆ ହୋଇଛି । ଖାଇଲେ ଦୋଷ କ'ଣ ?" କାଞ୍ଜିଖିଆ ଦେଖି ଓ ଏକଥା ଶୁଣି ପାଖରେ ଥିବା ଲୋକେ ଆଶ୍ଚର୍ଯ୍ୟ ହୋଇ ଥିଲେ । ଆଉ କେତେକ ନାନା କଥା କହି ନିନ୍ଦା କରିଥିଲେ ।

ଶ୍ରୀବାଞ୍ଛାନିଧି ପଟ୍ଟନାୟକ ୧୯୨୧ ରେ କଂଗ୍ରେସରେ ଯୋଗ ଦେଇ ଥିଲେ । ୧୯୨୫ ତାଙ୍କର ରୁଗ୍ଣ ପିତାଙ୍କ ଅନୁରୋଧରେ ସେ ତାଙ୍କର ପାରମ୍ପରିକ କରଣ କାମ ଗ୍ରହଣ କରିଥିଲେ । ଏହାପରେ ଦିନେ ସେ ପଣ୍ଡା ବାବୁଙ୍କୁ ଦେଖିବାକୁ ଆସିଲେ । ପଣ୍ଡାବାବୁ ତାଙ୍କୁ ଦେଖିବାମାତ୍ରେ କହିଲେ "ବାଞ୍ଛାନିଧି, ଆମର ଜଣେ ମରିଗଲେ" କଏ ବୋଲି ପଚାରିବାରୁ କହିଲେ "ତମେ" ବାଞ୍ଛାନିଧି ବାବୁ ପଚାରନ୍ତେ "କିମିତି ?" ସେ କହିଲେ, "ତମେ ଜଣେ ଆମମାନଙ୍କ ସାଙ୍ଗରେ ଦେଶ କାମ କରୁଥିଲ । ଏବେ ସରକାରୀ କାର୍ଯ୍ୟରେ ଯୋଗ ଦେଲ । ଆମ ଭିତରୁ ଜଣେ କର୍ମୀ ମରିଗଲେ ନାହିଁ ?"

ଥରେ ଶ୍ରୀ ଜୟମଙ୍ଗଳ ରଥ ଏ ଅଞ୍ଚଳର ଲବ୍ଧପ୍ରତିଷ୍ଠ ପଣ୍ଡିତ ଶ୍ରୀଚନ୍ଦ୍ରଶେଖର ବ୍ରହ୍ମାଙ୍କ ସହ ଅସ୍ପୃଶ୍ୟତା ନିବାରଣ ବିଷୟରେ ଯୁକ୍ତି କରୁ କରୁ ବ୍ରହ୍ମା କହିଲେ, ଅସ୍ପୃଶ୍ୟମାନଙ୍କୁ ଛୁଇଁବା କଥା କହୁଛ ଯେ ପଇତାଟା କାଢ଼ି ଦେଇ ପାରିବ ନା ?" ଜୟମଙ୍ଗଳ ତାଙ୍କର ବାର ବାର ଏହିକଥା କହିବାରେ ପଇତାଟିକୁ ବାହାର କରି ଦାଣ୍ଡକୁ ଫିଙ୍ଗି ଦେଲେ । ଏ ସମୟରେ ଶ୍ରୀବତ୍ସ ବାବୁ ଶ୍ରୀ ବାଞ୍ଛାନିଧି ପଟ୍ଟନାୟକଙ୍କ ସାଙ୍ଗରେ ସେଠାରେ ଯାଇ ଉପସ୍ଥିତ ହୁଅନ୍ତେ ବ୍ରହ୍ମା ସେମାନଙ୍କ ଆଗରେ ଜୟମଙ୍ଗଳଙ୍କର ଅଘୋର ପାପ କଥା କହିଲେ । ପଣ୍ଡାବାବୁ ପାଖରେ

ବସିଥିବା ଜଣେ ମୁସଲମାନ ବନ୍ଧୁଙ୍କୁ ଦେଖାଇ କହିଲେ "ସେ ଦାଣ୍ଡରୁ ହିନା ଫିଙ୍ଗି ଦେଉଛନ୍ତି. ମତେ କହିଲେ, ମୁଁ ତ ଏ ମହମ୍ମଦ ଘଜା ସାହେବଙ୍କ ତଳାରେ ପିନ୍ଧାଇ ଦେବି"। ଏଥିରେ ପଣ୍ଡିତେ ଆଶ୍ଚର୍ଯ୍ୟ ହୋଇ ଘୋର ପାପ କଥା, ଘୋର ପାପ କଥା" ବୋଲି କହିଥିଲେ ।

ଶ୍ରୀବତ୍ସ ଗୋରକ୍ଷା ଶ୍ରମ ନିକଟରେ ଗୋଟିଏ ବଡ଼ ଆମ୍ବ ତୋଟା । ତୋଟା ଜଗାଳି ହ ଡ଼ ଦିନେ ଆସିଥିଲା । ତାକୁ ଡାକି କହିଲେ, "ଆରେ, ଆଜି ରଜା ଘରକୁ ଯିବା, ସଂଧ୍ୟା ୪ଘଣ୍ଟା ବେଳେ ଆସିବୁ" । ସେ ୪ଟା ବେଳେ ଆସିଲା । ତାକୁ ଧରି ତୋଟା ବୁଲି ବୁଲି ତା କୁଡ଼ିଆକୁ ଗଲେ, ନାନା ପ୍ରକାର ଆମ୍ବ ପଗୁ ହୋଇ ଥିବା ଦେଖିଲେ ଏବଂ କହିଲେ "ଆଜି ମୋର କେଡ଼େ ଭାଗ୍ୟ, ରଜା ଘରକୁ ଆସିଲି," ହାଡ଼ି କହିଲା ରଜାଘର କାହିଁ ଆଜ୍ଞା ?" ଆରେ ଜାଣିନାହୁଁ । ଅମ୍ବକାଳେ ହାଡ଼ି ରଜା ହବ ? ତୋର ଏ କୁଡ଼ିଆ ରଜାଘର, ଜାଣିଲୁ ।"

ପରେ ତାଙ୍କର ଶିଷ୍ୟ ବାସୁଦେବଙ୍କ ସହ ପୁରୀ ମନ୍ଦିର ବେଢ଼ାରେ ବୁଲୁଛନ୍ତି ପଣ୍ଡାମାନେ ମୁକ୍ତିମଣ୍ଡପ ପଣ୍ଡିତମାନଙ୍କୁ ତାଙ୍କୁ ଦେଖାଇ କଣ କହୁଥିବା ଅନୁମାନ କରି ପଚାରିଲେ, ଏମାନେ କ'ଣ କହୁଛନ୍ତି । ବାସୁଦେବ କହିଲେ, ଆପଣଙ୍କୁ "ଜଳା ପାହାଡ଼" ବୋଲି କହୁଛନ୍ତି । ଏହା ଶୁଣି କହିଲେ କହିଦିଅ "ମୋପରି ଯେତେବେଳେ ଲକ୍ଷେ ଜଳାପାହାଡ଼ ହେବେ ସେତେବେଳେ ଯାଇ ଏ ଦେଶ ଓ ସମାଜର ଉନ୍ନତି ହେବ ।

ପରେ ଜଗନ୍ନାଥ ମନ୍ଦିରରେ ବୁଲି ବୁଲି ନାନା କଥା ଦେଖି କହିଲେ, 'ଛତିଶା ନିଯୋଗ ତ ରହିଲା । ଆଜି ମହାପ୍ରଭୁଙ୍କ ପାଇଖାନା ଓ ମୁତଖାନା କାହିଁ ?" ପୌଷ ପୂର୍ଣ୍ଣିମା ଦିନ ଜଗନ୍ନାଥଙ୍କର ସୁନାବେଶ, ତାଙ୍କର ଶିଷ୍ୟ ବାସୁଦେବ ଅତି ସଙ୍କୋଚ ଭାବରେ ଜଗନ୍ନାଥଙ୍କୁ ଦେଖିଯିବାକୁ କହିଲେ । ସେ ରାଜିହୋଇ ଜଣେ ପଣ୍ଡାଙ୍କୁ ଡାକି ଆଗରୁ ଏକଟଙ୍କା ଦେବାକୁ କହିଲେ । ସଂଧ୍ୟା ବେଳେ ଦୁହେଁ ଦର୍ଶନକୁ ଯାଉଛନ୍ତି । ଏହି ସମୟରେ ଏମାର, ବଡ଼ଛତା ପ୍ରଭୃତି ମଠ ମହନ୍ତମାନଙ୍କ ସହ ଦେଖାହେଲା । ମହନ୍ତମାନେ ଦେଖି ପଚାରିଲେ, "ପଣ୍ଡା ବାବୁ କେଡ଼େ ଆଶ୍ଚର୍ଯ୍ୟ କଥା, ଆପଣ ଆଜି କମିତି ଦର୍ଶନକୁ ଆସିଛନ୍ତି, ପଣ୍ଡାବାବୁ ଶୁଣି କହିଲେ, "ହଁ, ଆସିଛି ଜଗନ୍ନାଥଙ୍କୁ ପଚାରିବାକୁ । ଲୋକଙ୍କ ନାକରେ ଦଣ୍ଡୀ ନାହିଁ, ତମେ ଏତେ ସୁନା ମଣ୍ଡି ହୋଇଛ କାହିଁକି ?" ଏଥିରେ ମହନ୍ତମାନେ କହିଲେ ' ପଣ୍ଡାବାବୁ, ତମକୁ, ପାର ହେବ ନାହିଁ ?"

ଶ୍ରୀ ଗୋବର୍ଦ୍ଧନ ଦାଶ
୧୪ । ୯ । ୬୬

# ସଂସ୍କାରକ ଶ୍ରୀ ଶ୍ରୀବତ୍ସ ପଣ୍ଡା

ଶ୍ରୀ ଶ୍ରୀବତ୍ସ ପଣ୍ଡା ୧୮୭୦ ସାଲ କନ୍ୟା ୧୭ ଆଶ୍ୱିନ କୃଷ୍ଣ ଏକାଦଶୀ ଶୁକ୍ରବାରରେ ଗଞ୍ଜାମ, ଘୁମୁସର ଅନ୍ତର୍ଗତ ମଦାର ଗ୍ରାମରେ ଜନ୍ମ ଗ୍ରହଣ କରିଥିଲେ, ପିତା ବାସୁଦେବ ପଣ୍ଡା ପ୍ରଚୁର ଧନ ସମ୍ପଦର ମାଲିକ ଥିଲେ ମଧ୍ୟ, ସେ ପିଲାଙ୍କ ପଢ଼ାଶୁଣା ପ୍ରତି ଉଦାସୀନ ଥିଲେ । ପୁତ୍ର ଶ୍ରୀବତ୍ସଙ୍କ ଇଂରେଜୀ ପାଠ ପ୍ରତି ଅନୁରାଗ ଲକ୍ଷ୍ୟ କରି ପିତା ଧର୍ମ ପଣ୍ଡା ଭାଇ ବାସୁଦେବଙ୍କ ଅନିଚ୍ଛାସତ୍ତ୍ୱେ, ପୁତ୍ରର ଶିକ୍ଷା ପାଇଁ ସୁବ୍ୟବସ୍ଥା କଲେ । ୧୮୮୭ ଖ୍ରୀଷ୍ଟାବ୍ଦରେ ୧୭ ବର୍ଷ ବୟସରେ ସେ ରସଲକୋଣ୍ଡା ମଧ୍ୟ ଇଂରେଜୀ ସ୍କୁଲରେ ପଢ଼ା ଆରମ୍ଭ କଲେ । ପ୍ରତ୍ୟେକ ପରୀକ୍ଷାରେ ସେ କୃତିତ୍ୱର ସହିତ ଉତ୍ତୀର୍ଣ୍ଣ ହୋଇ ଦର୍ଶନ ଶାସ୍ତ୍ରରେ ବି. ଏ. ପାସ କରିବା ପର୍ଯ୍ୟନ୍ତ ବୃତ୍ତି ପାଇଥିଲେ ।

ବନ୍ଧୁବର୍ଗଙ୍କ ଅନୁରୋଧକ୍ରମେ ସେ ଜୀବନର ଅଂଶ ବର୍ଷ ଯାଏ ସବ ରେଜିଷ୍ଟ୍ରାର ରୂପେ ଖଟିଥିଲେ ମଧ୍ୟ ସାହିତ୍ୟ ସେବା ଓ ଦେଶ ସେବାରେ ସେ ନିଜକୁ ଅନବରତ ନିୟୋଜିତ ରଖିଥିଲେ । ବିବିଧ ବହି, ସମ୍ବାଦପତ୍ର ପଢ଼ିବା, ପ୍ରବନ୍ଧ ଲେଖିବା ତାହାଙ୍କ ଦୈନନ୍ଦିନ କାର୍ଯ୍ୟ ଥିଲା । ମାଟ୍ରିକୁଲେସନ୍ ପଢ଼ିବା ସମୟରେ ତାଙ୍କର ପ୍ରଥମ ପ୍ରବନ୍ଧ ସମ୍ବଲପୁର ହିତୈଷିଣୀରେ ପ୍ରକାଶ ପାଇଲା । ସେ ପ୍ରଜାବନ୍ଧୁ, ଉତ୍କଳବାସୀ, ଉତ୍କଳ ଦର୍ପଣ, ଉତ୍କଳ ସେବକ, ଉତ୍କଳବାର୍ତ୍ତା, ଉତ୍କଳ ଦୀପିକା, ସମ୍ବାଦ ବାହିକା, ଓଡ଼ିଆ ନବ ସମ୍ବାଦ, ଗଡ଼ଜାତବାସିନୀ, ଗୃହଦର୍ପଣ, ଆଶା, ପ୍ରଜାମିତ୍ର, ସମାଜ ମିତ୍ର, ସାହିତ୍ୟ, ମୁକୁର, ଭାରତ, ପ୍ରଭାତିତାରା ସତ୍ୟବାଦୀ ଶ୍ରଦ୍ଧାର ସହିତ ପଢ଼ୁଥିଲେ । ସେହି ସମସ୍ତ ପତ୍ର ପତ୍ରିକାରେ ପ୍ରାଂଶ୍ୟହ ତଥ୍ୟପୂର୍ଣ୍ଣ ପ୍ରବନ୍ଧ ଲେଖି ବହୁ ଜ୍ଞାତବ୍ୟ ବିଷୟ ଲୋକରେ ପ୍ରଚାର କରୁଥିଲେ । ସ୍ତ୍ରୀ ସ୍ୱାଧୀନତା, ବାଲ୍ୟବିବାହ, ସ୍ତ୍ରୀ ପ୍ରତି ସମ୍ମାନ, ଅସ୍ପୃଶ୍ୟଜାତି, ଅତିଥି ସତ୍କାର, ଶିଶୁବିବାହ, ସବର୍ଣ୍ଣ ବିବାହ, ଅବରୋଧ ପ୍ରଥା, ଶ୍ରାଦ୍ଧପିଣ୍ଡ, ନୂଆବୋହୂ, ପରଜାତି, ଜାତିଭେଦ, ଜାତିଗଣଣି, ଉତ୍କଳମାତା, ପୁରୋହିତ ଅତ୍ୟାଚାର, ନାରୀନିର୍ଯ୍ୟାତନ, ଆହାରରେ ଜାତିଭେଦ, ଗୋଷ୍ଠାଷ୍ଟମୀ, ବିଧବା ଯୁବତୀ ଅସବର୍ଣ୍ଣ ବିବାହ, ପୁନଃ ବିବାହ, ବେଶ୍ୟାସୃଷ୍ଟି, ବ୍ରହ୍ମଚର୍ଯ୍ୟ, ତିଳକଚକ୍ର, ଶିକ୍ଷା, ମାତୃଭାଷା, ସାହିତ୍ୟ ପ୍ରସଙ୍ଗ, ପୁନର୍ଜୀବନ, ପଣ୍ଡିତ ସଭା, ଆନ୍ତର୍ଜାତିକ ବିବାହ, ଗୁଡ଼ଖାଇ, ଅନ୍ନଚଣ୍ଡାଳ, ବିଭା ନ ହେଉଣୁ

ବିଧବା, ବଙ୍ଗଭଙ୍ଗ, ଗଙ୍ଗ, ଆଦ୍ଧ, ଶ୍ରାଦ୍ଧ, ପାଠାଗାର ପ୍ରଭୃତି ଅସଂଖ୍ୟ ପ୍ରବନ୍ଧ ସେ ଯାହା ସାମୟିକ ସମ୍ବାଦ ପତ୍ରମାନଙ୍କରେ ପ୍ରକାଶ କରିଥିଲେ, ତାହା ସଂସ୍କାରକ ନାମରେ ୮ ଖଣ୍ଡ ବହିରେ ପ୍ରକାଶ ପାଇଛି । ସେଥିରୁ ଅଧିକାଂଶ ସଂସ୍କାର ମୂଳକ ଥିବାରୁ, ପଣ୍ଡାବାବୁ କେତେକ ରକ୍ଷଣଶୀଳ ବ୍ୟକ୍ତିଙ୍କ କଡ଼ା କଟାକ୍ଷରେ ପଡ଼ିଥିଲେ । ସେ ଗଦ୍ୟ ଓ ପଦ୍ୟରେ ସ୍ୱପ୍ରଣୀତ ବହୁତ ଗ୍ରନ୍ଥ ପ୍ରକାଶ କରିଥିଲେ । ଶଶିକଳା ପରିଣୟ, ସଂସ୍କାର ସଙ୍ଗୀତାବଳୀ, ନିବେଦନ, ଶୁକପକ୍ଷୀ, ଦସ୍ତାବିଜ ବିଷୟ, ଖଣ୍ଡବାକ୍ୟ, ମୋ ମାତୃଭାଷା, ଆର୍ଯ୍ୟଧର୍ମ, ଗୃହାଶ୍ରମ, ଆରୋଗ୍ୟବିଧାନ, ସତ୍ୟାର୍ଥ ପ୍ରକାଶ ୧ମ, ୨ୟ, ମିତାଗ୍ନିର ଓ ସ୍ୱାସ୍ଥ୍ୟରକ୍ଷା ପ୍ରଭୃତି କେତୋଟି ବହି ପ୍ରକାଶ ପାଇଥିଲା । ତନ୍ମଧ୍ୟରୁ ଶେଷୋକ୍ତ ବହି ମ୍ୟାକମିଲନ୍ ଦ୍ୱାରା ପ୍ରକାଶିତ ଓ ପାଠ୍ୟ ବହିରୂପେ ନିର୍ବାଚିତ ହୋଇଥିଲା । ଏତଦ୍‌ବ୍ୟତୀତ ପଣ୍ଡାବାବୁଙ୍କ ଉଦ୍ୟମ ଓ ସମ୍ପାଦକତ୍ୱରେ କେତେକ ମାସିକ ଓ ସାପ୍ତାହିକ ପତ୍ର ପତ୍ରିକା ପ୍ରକାଶ ପାଇଥିଲା । ସେଥିମଧ୍ୟରେ 'ସଂସ୍କାରକ', 'ସମାଜମିତ୍ର', ଆଶା, ପ୍ରଜାମିତ୍ର ଉଲ୍ଲେଖଯୋଗ୍ୟ । ସେ ସେଥିପାଇଁ ଅଜସ୍ର ଟଙ୍କା ଦେଇଥିଲେ ଓ ରାଜାମାନଙ୍କଠାରୁ ଦିଆଇଥିଲେ । ଶେଷରେ 'ଆର୍ଯ୍ୟ'ର ସମ୍ପାଦନା ଓ ପରିଚାଳନା ଭାର ବହନ କରିଥିଲେ ।

ସରକାର କର୍ମଚାରୀ ଥିବା ସମୟରେ ଦେଶମିଶ୍ରଣ ଆନ୍ଦୋଳନ ଦେଶର ପ୍ରଧାନ ସମସ୍ୟା ଥିଲା । ଉତ୍କଳମଣି ଗୋପବନ୍ଧୁ, ଖଲ୍ଲିକୋଟ ରାଜା ହରିହର ମର୍ଦ୍ଦରାଜ ବାଲେଶ୍ୱର ରାଜା ବୈକୁଣ୍ଠନାଥ ଦେ, ଦେଶ ପ୍ରାଣ ମଧୁସୂଦନ ଦାସ, ଗୋପୀନାଥ ଶିକ୍ତରାୟ, ବଳଭଦ୍ର ମହାପାତ୍ର ନରସିଂହ ଦାସ ପ୍ରମୁଖଙ୍କ ସହିତ ଶ୍ରୀ ଶ୍ରୀବତ୍ସ ପଣ୍ଡା ଯୋଗଦେଇ ଦେଶମିଶ୍ରଣରେ ଅଂଶଗ୍ରହଣ ପାଇଁ ଆନ୍ତରିକ ଉଦ୍ୟମ କରୁଥିଲେ । ଦେଶମିଶ୍ରଣ ଆନ୍ଦୋଳନରେ ଯୋଗ ଦେବା ସରକାରୀ କର୍ମଚାରୀ ପକ୍ଷରେ ରାଜନୀତି ବିରୁଦ୍ଧ । ତଦାନୀନ୍ତନ ଗଞ୍ଜାମ କଲେକ୍ଟରଙ୍କ ଡ଼େଭିଡ୍ ପଣ୍ଡାବାବୁଙ୍କ ଅଫିସ ତନଖି କଲେ, ଇନସପେକ୍ଟରଙ୍କ ଜେନେରାଲ କୈଫିୟତ ଲୋଡ଼ିଲେ । ପଣ୍ଡା ବାବୁ ସମ୍ପୂର୍ଣ୍ଣ ଦୋଷୀ ସାବ୍ୟସ୍ତ ନ ହେଲେ ମଧ୍ୟ ତାଙ୍କୁ ପାର୍ବତୀପୁର ସ୍ଥାନାନ୍ତର କରାଗଲା ।

ଦେଶ ସେବାପାଇଁ ପଣ୍ଡାବାବୁ ବିଶେଷ ଭାବରେ ଆକୃଷ୍ଟ ହେବାପାଇଁ ସମୟ ଆସିଲା । ୧୯୨୦ ମସିହା ଅସହଯୋଗ ଆନ୍ଦୋଳନରେ ଛାତ୍ର, କର୍ମଚାରୀ, ସହର ମଫସଲରୁ ଅସଂଖ୍ୟ ଲୋକ ପୂର୍ଣ୍ଣପ୍ରାଣରେ ଯୋଗଦେଲେ । ପଣ୍ଡାବାବୁ ଇସ୍ତଫାଦେଇ ଆନ୍ଦୋଳନରେ ସେହି ସମୟରେ ଯୋଗଦେଲେ । ଗଞ୍ଜାମ କଂଗ୍ରେସ କମିଟିରେ ସଭାପତିରୂପେ ତାଙ୍କୁ ନିର୍ବାଚନ କରାଗଲା । କଂଗ୍ରେସ

ସମ୍ପାଦିତ ହିସାବରେ ସେ ବହୁତ ହିତକର କାର୍ଯ୍ୟ କରିଥିଲେ । ସେ ସହ-କର୍ମୀମାନଙ୍କ ସହିତ ଗସ୍ତକରି ବହୁ ଗ୍ରାମମାନଙ୍କରେ ପଞ୍ଚାୟତ ସ୍ଥାପନ କଲେ । ସ୍ୱରାଜ୍ୟ ପାଣ୍ଠି ପାଇଁ ଅଜସ୍ର ଧନ ସଂଗ୍ରହ କରାଗଲା । ସଂଗୃହୀତ ଧନ ସତକାର୍ଯ୍ୟରେ ନିୟମିତ ବ୍ୟୟ କରାଯାଉଥିଲା । ସଂଗୃହୀତ ପାଣ୍ଠିର ଆଦାୟ ଓ ଖର୍ଚ୍ଚର ନିର୍ଭୁଲ ହିସାବ ରଖାଯାଉଥିଲା । ସୂତାକଟା, ଖଦଡ଼ବୁଣା ପାଇଁ ବ୍ୟାପକ ପ୍ରଚାର ସହକର୍ମୀମାନଙ୍କ ସହଯୋଗରେ ସେ ପୁରପଲ୍ଲୀରେ କରୁଥିଲେ । ସେ ନିଜେ ଅରଟ ପ୍ରତ୍ୟହ ବ୍ୟବହାର କରୁଥିଲେ ।

ଚଉଶ ବର୍ଷ ପୂର୍ବେ ଝିଅମାନଙ୍କ ଶିକ୍ଷା ପ୍ରତି ଲୋକେ ଉଦାସୀନ ଥିଲେ । ପଣ୍ଡାବାବୁ ସ୍ତ୍ରୀଶିକ୍ଷାର ପ୍ରସାର ପାଇଁ ସର୍ବ ପ୍ରଥମେ ପୁରୁଷୋତ୍ତମପୁରରେ ଏକ ବାଳିକା ବିଦ୍ୟାଳୟ ସ୍ଥାପନ କଲେ । ସ୍କୁଲରେ ସ୍ପୃଶ୍ୟା ସ୍ପୃଶ୍ୟ ଭେଦ ଭାବ ନଥାଇ ବସିବା ପଢ଼ିବା କଥା ଦେଖି ପଣ୍ଡାବାବୁଙ୍କ ବିରୁଦ୍ଧରେ ଲୋକେ ବିଦ୍ରୋହୀ ହୋଇ ଉଠିଲେ । ସେଥିପ୍ରତି ସେ ଭ୍ରୂକ୍ଷେପ ନକରି ସରକାର ସ୍କୁଲ ହାତକୁ ନେବା ପର୍ଯ୍ୟନ୍ତ ସେ ପରିଚାଳନା ଖର୍ଚ୍ଚ ଦେଉଥିଲେ । ସ୍ଥାନୀୟରେ ସେ ବିଭିନ୍ନ ସ୍ଥାନରେ ଏକାଧିକ ବାଳିକା ବିଦ୍ୟାଳୟ ସ୍ଥାପନ କଲେ । ବେଲଗୁଣ୍ଠା, ଅସ୍କା, ହରିହରେଣ୍ଡି, ମନ୍ଦାର ପ୍ରଭୃତିରେ ସେ ସ୍ଥାପନ କରି ଆବଶ୍ୟକୀୟ ଖର୍ଚ୍ଚ ଦେଉଥିଲେ । ସେଥିପାଇଁ ସେ ବହୁ ବିପଦର ସମ୍ମୁଖୀନ ହେଉଥିଲେ ମଧ୍ୟ, ସେ କ୍ଷାନ୍ତ ହୋଇ ନ ଥିଲେ । ବର୍ତ୍ତମାନ ସେହି ସ୍ଥାନମାନଙ୍କରେ ସେହି ସ୍କୁଲ ଗୁଡ଼ିକ ସରକାରୀ ପରିଚାଳନାରେ ଉନ୍ନତ ସ୍ତରରେ ଚାଲିଛି । ସେଥିରୁ ଅଧିକାଂଶ ମଧ୍ୟମ, ଉଚ୍ଚଇଂରେଜୀ ବିଦ୍ୟାଳୟରେ ପରିଣତ ହେଲାଣି ।

ବିଧବା ବିବାହ ଓ ଯୁବତୀ ବିବାହ ପ୍ରଚଳନ ପଣ୍ଡାବାବୁଙ୍କର ଥିଲା ଅନ୍ୟତମ ପ୍ରଧାନ ଲକ୍ଷ୍ୟ । ପଣ୍ଡିତ ହରିହର ସଦସ୍ୟ, ଶ୍ରୀ ବିନାୟକ ମହାପାତ୍ର ପ୍ରମୁଖ କେତେଜଣ ତାଙ୍କୁ ବେଳେ ବେଳେ ସେହି ଦିଗରେ ଉତ୍ସାହ ଦେଉଥିଲେ । ଶଶିକଳା ପରିଣୟ ନାଟକ, ସଂସ୍କାର ସଙ୍ଗୀତାବଳୀ ସେହି ସମୟରେ ସେ ଲେଖି ପ୍ରକାଶ କରିଥିଲେ । ସର୍ବ ପ୍ରଥମେ ଲଞ୍ଜିପଲ୍ଲୀରେ ବିଧବାଶ୍ରମ ସ୍ଥାପନ କରା ଯାଇଥିଲା । ବ୍ରହ୍ମପୁର ବ୍ୟାଙ୍କ ବଙ୍ଗଳା ସେହି ଉଦ୍ଦେଶ୍ୟରେ ସେ ଖରିଦ କଲେ । ଏ ଦିଗରେ ତାଙ୍କର ଉତ୍ସାହ ଏତେ ଥିଲାଯେ, ଦେଶର ଯେତେ ସ୍ଥାନରେ ସେହିପରି ଅନୁଷ୍ଠାନ ଥିଲା, ସେ ପ୍ରତ୍ୟେକ ଅନୁଷ୍ଠାନକୁ ଆର୍ଥିକ ସାହାଯ୍ୟ ଦେଉଥିଲେ । ପୁଷ୍ପ ଗୌଡ଼ସାହି ବିଧବା ଶ୍ରମକୁ ସେ ମାସିକ ୫୦ ଲେଖାଏ ବହୁଦିନ ଧରି ସାହାଯ୍ୟ ଦେଇଥିଲେ ।

ପଣ୍ଡାବାବୁଙ୍କ ସତ୍‌କାର୍ଯ୍ୟ ମଧ୍ୟରେ ତନରଡ଼ା ଗୋରକ୍ଷା ଶ୍ରମ ଏକ ସ୍ଥାୟୀ କୀର୍ତ୍ତି । ତାହା ୧୯୨ ରେ ସେ ସ୍ଥାପନ କରିଥିଲେ । ସେଥିପାଇଁ ସରକାର ୧୨ ଏକର ଜମି ଦେଇଛନ୍ତି । ଏଥିରେ ବର୍ତ୍ତମାନ ସୁନ୍ଦର ଫଳ ଓ ଫୁଲ ବଗିଚା ଦେଖିବାକୁ ମିଳେ । ଗୋଶାଳା ଓ ଆର୍ଯ୍ୟ ସମାଜ ପାଇଁ ପଣ୍ଡାବାବୁ ଟ୫୦୦୦୦ର ଭୂସମ୍ପତ୍ତି ଦାନ କରିଥିଲେ । ବର୍ତ୍ତମାନ ସେଇ ଭୂସମ୍ପତ୍ତିର ମୂଲ୍ୟ ବହୁତ ବେଶୀ ହେବ । ଏତଦବ୍ୟତୀତ ଗୋଶାଳା ବେଢ଼ା ମଧ୍ୟରେ ପୁଷ୍କରଣୀ, କୂପ ଓ ଏକ ପକାଘର ପଣ୍ଡାବାବୁ କରି ଦେଇଛନ୍ତି । ଏଇ ସମସ୍ତର ମୂଲ୍ୟ ଟ୫୦୦୦୦ରୁ କମ ହେବ ନାହିଁ । ଗୋଶାଳାର ପରିଚାଳନା ଭାର ଟ୍ରଷ୍ଟ ବୋର୍ଡ଼କୁ ଅର୍ପଣ କରାଯାଇଛି । ଟ୍ରଷ୍ଟ ବୋର୍ଡର ପାଞ୍ଚଜଣ ସଭ୍ୟ ମଧ୍ୟରୁ ଶ୍ରୀ ଘନବନ୍ଧୁ ବେହେରା ସଭାପତି, ଶ୍ରୀ କାଶୀନାଥ ପଟ୍ଟନାୟକ ସମ୍ପାଦକ ଓ ଶ୍ରୀ କ୍ଷେତ୍ରମଣି ପଣ୍ଡା କୋଷାଧ୍ୟକ୍ଷ ଭାବରେ କାର୍ଯ୍ୟ ପରିଚାଳନା କରନ୍ତି । ଅନ୍ୟତମ ସଭ୍ୟ କବିରାଜ ବାସୁଦେବ ତ୍ରିପାଠୀ ଅନବରତ ଉପସ୍ଥିତ ରହି ଅନୁଷ୍ଠାନ ପ୍ରତି ସୁଦୃଷ୍ଟି ରଖିଥିବା ଲକ୍ଷ୍ୟ କରାଯାଏ ।

ଖ୍ରୀ: ୧୯୩୦ ଠାରୁ ପଣ୍ଡାବାବୁଙ୍କ ସ୍ୱାସ୍ଥ୍ୟ ଭାଙ୍ଗିପଡ଼ିବା ଦେଖାଗଲା । ୧୯୪୩ ରେ ୭୩ ବର୍ଷ ବୟସରେ ସେ ଶେଷ ନିଶ୍ୱାସ ତ୍ୟାଗ କଲେ ।

ତନରଡ଼ା
୧୭ ୯ ୬୫

ଶ୍ରୀ ଅନନ୍ତ ପଦ୍ମନାଭ ପଟ୍ଟନାୟକ
( ତନରଡ଼ା, ଗଞ୍ଜାମ )

---

# ସିଦ୍ଧ ସଂସ୍କାରକ ଶ୍ରୀବସ୍ତ

ଅକ୍ଟୋବର ଚହଳାଟି ଭୂମୁସରବାସୀ କାର୍ତ୍ତିକ ପ୍ରତି ଓଡ଼ିଆଙ୍କ ପକ୍ଷରେ ଏକ ଅବିସ୍ମରଣୀୟ ଦିବସ । ଏକ ପବିତ୍ର ଆତ୍ମା ସିଦ୍ଧ ସଂସ୍କାରକ ଶ୍ରୀବସ୍ତଙ୍କର ଜନ୍ମ ହୋଇଥିଲା ଏହି ଦିବସରେ । ସାରେଦ୍, ବନ୍ଦିତ ଦେବଭୂମି ଭାରତର ସାମାଜିକ ତଥା ରାଜନୈତିକ ଅଧଃପତନରେ ବ୍ୟଥିତହୋଇ ବିଧାତା ଏହାର ପୁନରୁତ୍ଥାନ ପାଇଁ ଊନବିଂଶଶତାବ୍ଦୀର ଶେଷାର୍ଦ୍ଧରେ ନିର୍ଦ୍ଦିଷ୍ଟ ନିର୍ଦ୍ଦେଶସହ ଯେଉଁ କେତେ ପବିତ୍ର ଆତ୍ମାକୁ ପ୍ରେରଣ କରିଥିଲେ, ଶ୍ରୀବସ୍ତ ହିଁଏତ ସେମାନଙ୍କ ମଧ୍ୟରୁ ଜଣେ । ଶ୍ରୀବସ୍ତଙ୍କର ସାଧାରଣ ମନୁଷ୍ୟଜୀବନ ପ୍ରତି ଯେଉଁ ସ୍ନେହ, ସମ୍ମାନ ଓ ମୂଲ୍ୟବୋଧ, ସମାଜର ଅଭାବ, ଅଶାନ୍ତି ଓ ଅତୃପ୍ତିର ଯେଉଁ ଅପୂର୍ବ ଅବବୋଧ ଏବଂ ଏହାର ନିରାକରଣ ପାଇଁ ଯେଉଁ ଦୃଢ଼ସଙ୍କଳ୍ପ, ଆତ୍ମନିଷ୍ଠା ଓ କର୍ମପ୍ରେରଣା, ତାହା କ୍ୱଚିତ୍ ଲୋକଙ୍କଠାରେ ଦେଖିବାକୁ ମିଳେ । ଅବିରତ ଓ ଅବାରିତ ଥିଲା ସେ ଇଚ୍ଛା—ଅବାଧିତ ଓ ଅବିଶ୍ରାନ୍ତ ଥିଲା ସେ ପ୍ରଚେଷ୍ଟା । ସମାଜର ଧର୍ମାନ୍ଧତା ଓ କର୍ମାନ୍ଧତା, ବ୍ୟକ୍ତିବିଶେଷର ସ୍ୱାର୍ଥମୁଖୀ ହିଂସାଦ୍ୱେଷ କପଟ ତାଙ୍କର ଚରଣ ସ୍ପର୍ଶ କରିପାରି ନ ଥିଲା । ବହୁ ସମୟରେ ଏଥିରେ ସେ ଶିକାର ହୋଇ ପଡ଼ିଛନ୍ତି; କିନ୍ତୁ ଆତ୍ମସମର୍ପଣ କରିନାହାନ୍ତି । କୁଟୁମ୍ବର ଦୁଃସ୍ଥ ପରିବେଶ ଓ ସମାଜର କୁସଂସ୍କାରରେ ଛନ୍ଦିହୋଇ ସେତେବେଳେ ଦୀନ ଓଡ଼ିଆର ଯେଉଁ ବିଚିତ୍ର ଗତିବିଧି ପ୍ରକାଶ ପାଉଥିଲା, ତାହାଦେଖି ବୀର୍ଯ୍ୟବାନ ଶ୍ରୀବସ୍ତଙ୍କ ପ୍ରାଣ ପ୍ରତିମା ଅସ୍ଥିର ହୋଇ ଉଠିଥିଲା । ସେ ଅଚିରେ ଏହାର ଉଚିତ ପରିବର୍ତ୍ତନ ପାଇଁ ଅଧୀର ହୋଇ ପଡ଼ିଥିଲେ । ତାଙ୍କର ସେ ଅତୃପ୍ତପ୍ରାଣ ଏଥିରେ ଯାହାକିଛି ସିଦ୍ଧ ଓ ଶୁଦ୍ଧ ଖୋଜିବାରେ ବ୍ୟାକୁଳ ହୋଇ କ୍ରମେ ଦୟାନନ୍ଦ ସରସ୍ୱତୀଙ୍କ ଆର୍ଯ୍ୟଧର୍ମ ଆଡ଼କୁ ଆକୃଷ୍ଟ ହୋଇ ପଡ଼ିଥିଲା । କ୍ରମେ ସେ ତାଙ୍କର ସାଇ, ଭାଇ, ଗୃହ, ବନ୍ଧୁ ସମସ୍ତଙ୍କୁ ପବିତ୍ର ଆର୍ଯ୍ୟଧର୍ମରେ ଦୀକ୍ଷିତକରି ଶୁଦ୍ଧ ପଥ କରି ଗଢ଼ିବା ପାଇଁ ବଦ୍ଧପରିକର ହୋଇ ଉଠିଥିଲେ ।

ସାଧାରଣ ବ୍ୟକ୍ତି ବିଶେଷ ନୁହଁ, ସେ ଥିଲେ ଏକ ଶୁଦ୍ଧ ଶାଶ୍ୱତ ଶକ୍ତି । ଜନକଲ୍ୟାଣର ମଙ୍ଗଳ ମନ୍ତ୍ରରେ ଉଦବୁଦ୍ଧ ହୋଇ ଏହି ଶୁଦ୍ଧ ଶକ୍ତି ଯେଉଁ ସିଦ୍ଧତତ୍ତ୍ୱରେ ଆତ୍ମନିୟୋଗ କରିଥିଲା, ତାର ଯଥାର୍ଥତା ଓ ସାରବତ୍ତା ନିର୍ଣ୍ଣୟ କରିବା ନିଷ୍ପ୍ରୟୋଜନ । ଅବ୍ୟର୍ଥ ସେ ଶକ୍ତି ଓ ଅବ୍ୟୟ, ଅକ୍ଷୟ ଅନନ୍ୟ ସେ

ସାଧନା । ଯୁଗ ଯୁଗ ଧରି କେତେ ସ୍ୱଳ୍ପାୟୁ ମାନବ ଅବନୀ ବକ୍ଷରେ ଦେହ ଧାରଣ କରି କାଳର ଏହି କରାଳ ସ୍ରୋତରେ ଉଭେଇ ଯାଉଥିବେ; କିନ୍ତୁ ଶ୍ରୀବସୁଙ୍କ ଗୋରକ୍ଷା ଶ୍ରମ ପଛରେ ଯେଉଁ ଶୁଦ୍ଧ ଚିନ୍ତାଶକ୍ତି ଓ ପ୍ରେରଣା ବିଦ୍ୟମାନ, ତାହା ଏହି ସ୍ରୋତର ଯେତେ ଘାତ ପ୍ରତିଘାତ ଭିତରେ ଦେଇ ଅଗ୍ରସର ହେଉଥିବ, ସେତେ ଶୋଧିତ ସୁବର୍ଣ୍ଣ ତୁଲ୍ୟ ତେଜମୟ ହୋଇ ପ୍ରତିଭାତ ହେଉଥିବ ।

ଗୋଶାଳା ତାଙ୍କର ସେହି ଶୁଦ୍ଧ ଓ ମୌଳିକ ଚିନ୍ତାଧାରାର ଏକ ମୂର୍ତ୍ତିମନ୍ତ ପ୍ରତୀକ । ଏହାର ନାମ, ଚିତ୍ର, ପରିବେଷ୍ଟନୀ, ସର୍ବୋପରି ଏହାପଛରେ ଥିବା ଆଶା ଓ ଅଭିଳାଷ ସମସ୍ତ ତାଙ୍କର ସେହିଦିନର ସେହି ଗଭୀରଚିନ୍ତା ଓ ଅଫୁରନ୍ତ ପ୍ରେରଣାର ସ୍ପଷ୍ଟ ସୂଚନା ଦିଏ । ପ୍ରଚେଷ୍ଟାର ଅଭାବରୁ ଅବଶ୍ୟ ଆଜି ଏହା ବହୁ ସମୟରେ ସର୍ବସାଧାରଣଙ୍କ ଦୃଷ୍ଟି ଆକର୍ଷଣ କରିପାରୁ ନାହିଁ ବା ଜାତି ତଥା ଦେଶର ବିଭିନ୍ନ କର୍ମକ୍ଷେତ୍ରରେ ଉଚିତ ସ୍ଥାନ ନେଇ ପାରୁନାହିଁ । କିନ୍ତୁ କର୍ମମୟ ଜୀବନର ବିଭିନ୍ନ ସମୟରେ ଦେଶ ତଥା ଦଶର ଦୁରବସ୍ଥାରେ ବ୍ୟଥିତ ହୋଇ ତାଙ୍କର ଅତୃପ୍ତପ୍ରାଣ ଯାହା କିଛି ଅଯୋଗ୍ୟ, ଅବାଞ୍ଛିତ ତାହାକୁ ନିଜ ସନ୍ଦେହରେ ନିପାତକରି ସମାଜର ଯେଉଁ ନୂତନ ରୂପ ରେଖର କଳ୍ପନା କରୁଥିଲା, ଯୁଗେ ଯୁଗେ ତାର କର୍ମକେନ୍ଦ୍ର ହେବାପାଇଁ ସୃଷ୍ଟି ହୋଇ-ଥିଲା ଗୋରକ୍ଷା ଶ୍ରମ ।

ବର୍ତ୍ତମାନ ଯୁଗରେ ଅବଶ୍ୟ ସମାଜର ବହୁକ୍ଷେତ୍ରରେ ଦ୍ରୁତ ପରିବର୍ତ୍ତନ ଘଟିଛି । ଅସୂର୍ଯ୍ୟଂପଶ୍ୟା ଅବଗୁଣ୍ଠନବତୀ ପ୍ରକୃତି ଅନ୍ତଃପୁରସ୍ଥା ପୂର୍ଣ୍ଣଯୌବନା ପରମସୁନ୍ଦରୀ କୁଳକାମିନୀଙ୍କର ମୂର୍ଖତା ଚରିତ୍ର ଗୁଣରୂପେ ଆଉ ପରିଗଣିତ ହେଉନାହିଁ । ସମାଜର ବହୁଲୋକେ ସ୍ତ୍ରୀ ଶିକ୍ଷାର ଆବଶ୍ୟକତା ଉପଲବ୍ଧି କଲେଣି । ଭଲ ବା ମନ୍ଦ ଭାବରେ ହେଉ, ମାଧ୍ୟମିକ ଶିକ୍ଷା ପର୍ଯ୍ୟନ୍ତ ବାଧ୍ୟତାମୂଳକ ଭାବେ ସଂସ୍କୃତ ଶିକ୍ଷା ଦିଆଯାଉଛି । ଚିଠି ପତ୍ର, ଦଲିଲ ଦରଖାସ୍ତ କାହିଁକି, ଓଡ଼ିଶାରେ ଓଡ଼ିଆ ଭାଷା ପୂର୍ଣ୍ଣ ସରକାରୀଭାଷା ରୂପେ ବ୍ୟବହାର କରିବାର ଆବଶ୍ୟକତା ପ୍ରତ୍ୟେକ ଓଡ଼ିଆ ହୃଦୟଙ୍ଗମ କରିପାରିଛି । ବାଲ୍ୟବିବାହ କ୍ରମେ ଜନପ୍ରିୟତା ହରାଉଛି । ଜାତି ଭେଦ ଓ ଧର୍ମାନ୍ଧତାର ବିଷମୟ ଫଳପ୍ରତି ସମସ୍ତେ ସଚେତ ହୋଇ ସଜାଗ ରହିବାର ଦେଖାଗଲାଣି । କିନ୍ତୁ ଉତ୍କଳ ଭୂମିରେ ଏହି ସବୁ ଭାବଧାରାର ପ୍ରକୃଷ୍ଟ ପରିପ୍ରସାର ପୂର୍ବରୁ ଯେଉଁ କେତେଲୋକଙ୍କ ମନରେ ଏଥିର ପ୍ରଥମ ଉନ୍ମେଷ ଆତ୍ମପ୍ରକାଶ କରି ବିକାଶ ଲାଭ କରିଥିଲା, ସେମାନଙ୍କ ମଧ୍ୟରେ ବିଦ୍ୱପୁରୁଷ ଶ୍ରୀବସୁ ଅନ୍ୟତମ । ଶ୍ରୀବସୁ ଆଧୁନିକ ସ୍ତ୍ରୀ ଶିକ୍ଷାର କଳ୍ପନା କରିନଥିଲେ । ତାଙ୍କ ଚିନ୍ତାଥିଲା ଗୁରୁକୁଳ ଗୃହର । ସବୁ ଦଲିଲ ଓ ଦରଖାସ୍ତକୁ

ଓଡ଼ିଆ ଭାଷାରେ ପ୍ରକାଶ କରି ପ୍ରସାର କରିବାକୁ ବ୍ରତୀ ହୋଇଥିବା ଲୋକଙ୍କ ଭିତରେ ସେ ହେଉଛନ୍ତି ସର୍ବପ୍ରଥମ । ସେ ଗଞ୍ଜିତ ନଥିଲେ; କିନ୍ତୁ ହିନ୍ଦୁଧର୍ମର ପୂଜିତ ଗୋଜାତିର ଦୁଃସ୍ଥ ଦୁର୍ବଳ ଅବସ୍ଥାର କରୁଣ ଆର୍ତ୍ତନାଦ ତାଙ୍କର କୋମଳ ହୃଦକନ୍ଦରରେ ଯେଉଁ ପ୍ରତିଧ୍ୱନି ସୃଷ୍ଟି କରିଥିଲା, ତାହା ସେ ସହି ନ ପାରି ସର୍ଜନା କରିଥିଲେ ଗୋଶାଳା' ।

ଭାରତର ସ୍ୱାଧୀନତା ସଂଗ୍ରାମରେ ଯେଉଁ ତେଜବନ୍ତ ତ୍ୟାଗୀପୁରୁଷ ସବୁ ଅଶେଷ ତ୍ୟାଗ ସ୍ୱୀକାର କରିଥିଲେ, ତାର ସୀମା ନିରୂପଣ କରିବା କଷ୍ଟସାଧ୍ୟ । ମାତ୍ର ସ୍ୱାଧୀନତା ଆନ୍ଦୋଳନ ତଥା ପ୍ରଦେଶ ଗଠନ ଆନ୍ଦୋଳନରେ ଶ୍ରୀବିପ୍ରଙ୍କ ଅବଦାନ କିଛି କମ୍ ନୁହେଁ । ଗଞ୍ଜାମରେ ପ୍ରଥମ ଉତ୍କଳ ସମ୍ମିଳନୀର ସେ ଥିଲେ ମୁଖ୍ୟ ଉଦ୍ୟୋକ୍ତା । ବାଲ୍ୟ ଓ କୈଶୋରରେ ସୁଦ୍ଧା ଦେଶର ଡାକକୁ ତାଙ୍କର ସେହି ଜାତିସ୍ପୃହାବାଧା ମନ ଏଡ଼ିଦେଇ ପାରିନଥିଲା । ଉଚ୍ଚଶିକ୍ଷା ପରେ ସ୍ୱୀୟ ଯୋଗ୍ୟତା ସହ କେତେଦିନପାଇଁ ମାତ୍ର ସେ ସରକାରୀ ଚାକିରିରେ ପ୍ରବେଶ କରିଥିଲେ, କିନ୍ତୁ ବିଦେଶୀ ବର୍ଜନ ଆନ୍ଦୋଳନ ବେଳେ ଦେଶମାତୃକାର ଯେଉଁ ଆହ୍ୱାନ ଆସିଲା, ସେହି ପ୍ରାଣ ଉନ୍ମାଦକ ମହାପ୍ରେରଣାରେ ଉଦ୍‌ବୁଦ୍ଧ ହୋଇ ସେ ଚାକିରି ଛାଡ଼ି ଦୁନିଆ ଦାଣ୍ଡକୁ ଗୋଡ଼ ବଢ଼ାଇ ଦେଇଥିଲେ ଜାତିର ମୁକ୍ତି କାମନାରେ ।

ତାଙ୍କର ଏହି ଷଷ୍ଠତମ ଜନ୍ମଦିବସରେ ଗୋଟିଏ କଥା ସ୍ୱତଃ ମନକୁ ଆସେ । କିପରି ତାଙ୍କର ସେ ଶାଶ୍ୱତଶକ୍ତିର ପୂଜା କରାଯାଇପାରେ ? ସେ ସିଦ୍ଧ ସଂସ୍କାରକଙ୍କ ସ୍ମୃତି ରକ୍ଷା କିପରି କରାଯାଇ ପାରିବ ? ମାତ୍ର ସେ ନିଜେ ହିଁ ତାଙ୍କନିଜର ସ୍ମୃତି… ଜନ୍ମତିଥି ବା ଶ୍ରାଦ୍ଧଦିବସରେ ଗୋଶାଳାରେ କେତେକ ସଭା, ସମିତି ଭୋଜି, ମଣ୍ଡଳୀ କରି ସେ ଶାଶ୍ୱତ ଶକ୍ତିର ପୂଜା କଳ୍ପନା କରିବା ନିରର୍ଥକ । ଅମର ଆତ୍ମାର ମହାପ୍ରୟାଣ ପରେ ମରଦେହ ଅବଶ୍ୟ ମାଟିରେ ମିଶିଛି । କିନ୍ତୁ ତାଙ୍କର ସେ ଯେଉଁ ସଂସ୍କାରକାମନା ସତ୍ୟନିଷ୍ଠା ଓ କର୍ମପ୍ରେରଣା ତାହା ବୃକ୍ଷ, ଲତା ଡାଳ, ପତ୍ର, କାର୍ଯ୍ୟକ ଗୋଶାଳାର ପ୍ରତି ଗଳିକନ୍ଦରେ ଆଜିସୁଦ୍ଧା ପ୍ରତିବିମ୍ବିତ ହୋଇ ଉଠୁଛି । ଏହି ପ୍ରତିବିମ୍ବ ମଳିନ ହୋଇଯିବା ଆଗରୁ ଆଦର୍ଶରୂପେ ଧରିନେଇ, ଅନୁଷ୍ଠାନ ଉପରେ ତାଙ୍କର ଯେଉଁ ଦୁର୍ଜୟ ଆଶା ଓ ବିଶ୍ୱାସ ଥିଲା, ତାହାକୁ ଯଦି ଉଚିତ ମାର୍ଗରେ ଚରିତାର୍ଥ କରିବାକୁ ଚେଷ୍ଟା ହୁଏ, ତେବେ ତାହାହିଁ ହେବ ସେହି ଶାଶ୍ୱତ ଶକ୍ତିର ସାର୍ଥକ ପୂଜା ।

ଶ୍ରୀ କାଶେଶ୍ୱର ଚନ୍ଦ୍ର ତ୍ରିପାଠୀ

# ଶ୍ରୀବତ୍ସ ସ୍ମରଣିକା

୧ । ୧୦ । ୭୫ ଗୋଟିଏ ପୁଣ୍ୟ ଦିବସ । ଧୁମୁସର ନିବାସୀ ବରେଣ୍ୟ, ପରମ ପ୍ରଜାହିତ, ସାହିତ୍ୟସେବୀ, ଧର୍ମପ୍ରାଣ, ସଂସ୍କାର ପ୍ରୟାସୀ, ସୁପଣ୍ଡିତ ଶ୍ରୀବତ୍ସ ପଣ୍ଡାଙ୍କର ଜନ୍ମ ତିଥି ଜାତିପକ୍ଷରେ ଭକ୍ତି ଶ୍ରଦ୍ଧାଞ୍ଜଳୀ ଅର୍ପଣର ଦିବସ ।

୧୯୧୨ କି ୧୩ ସାଲର କଥା । ମୁଁ ବୋଧହୁଏ ସେତେବେଳେ ପ୍ରଥମ ଶ୍ରେଣୀର ଛାତ୍ର ବଡ଼ଖେମୁଣ୍ଡି ଜର୍ଜମିଡ଼ଲ ଇଂଲିଶ୍ ସ୍କୁଲରେ । ପଣ୍ଡା ମହାଶୟ ସେତେବେଳେ ଥିଲେ ବଡ଼ଖେମୁଣ୍ଡିର ସବ୍‌ରେଜିଷ୍ଟ୍ରାର । ବଡ଼ଖେମୁଣ୍ଡି ସମଗ୍ର ଗଞ୍ଜାମର ବୃହତ୍ତମ ଗ୍ରାମ । ଗଜପତି କୃପାମୟ ଦେବ ସେତେବେଳେ ରାଜ୍ୟର ଅଧିପତି । ବଡ଼ଖେମୁଣ୍ଡିରେ ଏକ ମାତ୍ର ସରକାର କଚେରୀ ସବ୍‌ରେଜିଷ୍ଟ୍ରାରଙ୍କ ଅଫିସ । ପଣ୍ଡା ମହାଶୟଙ୍କ ବେତନ ୫୦ କି ୭୦ ଟଙ୍କାମାତ୍ର । ସାହେବ ପରି ଗୋରା । ଚଳ ଆଖି; କିନ୍ତୁ ସୁଶ୍ରୀସମ୍ପନ୍ନ । ଭାରି କଡ଼ା, ମାଜା ଓ ଛାନା । ଏଣୁ ଲୋକଙ୍କ ଭିତରେ ତାଙ୍କ ପ୍ରତି ଖୁବ୍ ଭୟ ଓ ସମ୍ମାନ ଏକାଧାରରେ ପ୍ରଦର୍ଶିତ ହେଉଥିଲା । ବଡ଼ଖେମଣ୍ଡି ଏକ ରକମ ଦ୍ୱିଭାଷୀ ଅଞ୍ଚଳ । କାମ୍ପ, ବେଲମା, ରେଡ଼ି ଆଦି ଗୁଡ଼ାଏ ତେଲୁଗୁ ଲୋକ ଗାଁ ଓ ଆଖ ପାଖର ବିଭିନ୍ନ ପଲ୍ଲିରେ ନିବାସ କରନ୍ତି । ଏଣୁ ସେହି ଅଞ୍ଚଳର ଦଲିଲ ପତ୍ର ବିଶୁଦ୍ଧ ଓଡ଼ିଆରେ ଲେଖାଯାଉ ନ ଥିଲା । ସେତେବେଳେ ମଧ୍ୟ ରେଜିଷ୍ଟ୍ରି ହେବାକୁ ଥିବା ଦଲିଲ, ଦସ୍ତାବେଜ ଗୁଡ଼ିକର ଲିଖନ ପ୍ରଣାଳୀ ସୁପ୍ରତିଷ୍ଠିତ ନ ଥିଲା । ଏଣୁ ପଣ୍ଡା ମହାଶୟଙ୍କର ପ୍ରଥମ କାମହେଲା, ଦଲିଲ ସବୁ ବିଶୁଦ୍ଧ ଓଡ଼ିଆରେ ଆଇନ ସମ୍ମତ ଭାବେ ନିର୍ଦ୍ଦିଷ୍ଟ ପ୍ରଣାଳୀରେ ଲେଖାଯିବା ସକାଶେ ପନ୍ଥା ଉଦ୍ଭାବନ କରିବା । ବହୁ ଶ୍ରମ ସ୍ୱୀକାର କରି ସେ ନିଜେ ଖଣ୍ଡିଏ ବହି ପ୍ରକାଶ କରି ସେଥିରେ ରେଜିଷ୍ଟ୍ରି କଲାବା ଯାବତୀୟ ନୋଟ୍, ବନ୍ଧକ, ବିକି, ଚୁକ୍ତି ନାମା, ଦାନପତ୍ର, ୱିଲ୍ ଇତ୍ୟାଦିର ଆଇନ ସଙ୍ଗତ ଲିଖନ ପ୍ରଣାଳୀର ବହୁ ନମୁନା ପ୍ରଦତ୍ତ କରି ଲେଖକମାନଙ୍କୁ ବାଧ୍ୟତା ମୂଳକ ଭାବେ ବହିଟି ବ୍ୟବହାର କରିବାକୁ କଡ଼ା ନିୟମ ଜାରି କରିଥିଲେ । ତାହାଦ୍ୱାରା ଲେଖକମାନଙ୍କର ବହୁ ସୁବିଧାହେବା ସଙ୍ଗେ ସଙ୍ଗେ ଲୋକମାନଙ୍କର ଅଶେଷ ଉପକାର ସାଧିତ ହୋଇଥିଲା । ଏବେ ପଚାଶ ବର୍ଷପରେ ମଧ୍ୟ ସେହି ବହିଟିର ବହୁଳ ବ୍ୟବହାର ଜିଲ୍ଲାର ବିଭିନ୍ନ ଅଂଶରେ ଦେଖିବାକୁ ମିଳେ ।

ଭାରତ ଗୋଟାଏ ମରହଟିଆ ଦେଶ । ଜାତିପ୍ରଥା ତାର ଜୀବନର ସର୍ବସ୍ୱ । ଯୀଶୁଙ୍କ ଆବର୍ଭାବର ପାଖାପାଖି ଏହି ଦୁଇ ହଜାର ବର୍ଷ ଭିତରେ ପୃଥିବୀରେ ସବୁକ୍ଷେତ୍ରରେ ଭୀଷଣ, ଅବର୍ଣ୍ଣନୀୟ ପରିବର୍ତ୍ତନ ଘଟିଗଲଣି । ଭାରତରେ ମଧ୍ୟ ତାହାର ଗୁପ୍ତ ଓ ସ୍ପଷ୍ଟ ପାତ ହୋଇଛି, କିନ୍ତୁ ଅତି ଧୀର ମନ୍ଥର ଗତିରେ । ଜାତି ବିଷୟରେ କିନ୍ତୁ ଭାରତବାସୀ ନଗ୍ରେଣ୍ଡବନ୍ଦୀ । ଏବେମଧ୍ୟ କୋଟି କୋଟି ଶିକ୍ଷିତ ମୂର୍ଖ ଜାତିକୁ ଜାବୋଡ଼ି ଧରି ମରଜୀବନର ମୁକ୍ତି ଆଶା ପୋଷଣ କରନ୍ତି । କିନ୍ତୁ ଅର୍ଦ୍ଧ ଶତାବ୍ଦୀ ତଳେ ଓଡ଼ିଶା ପରି ଗୋଟାଏ ଅନୁନ୍ନତ ରାଜ୍ୟରେ ଜାତିଟେକର ମାନ ସମ୍ମାନ, ବିଶେଷ କରି ପଣ୍ଡାଙ୍କ ଗୋଷ୍ଠୀ ବ୍ରାହ୍ମଣ ମାନଙ୍କ ମଧ୍ୟରେ ଯେ କି ଉତ୍କଟ ନ ହୋଇ ଥିବ ସହଜେ ଅନୁମେୟ । ସେତେବେଳେ ସୁଦ୍ଧା, ବ୍ରାହ୍ମଣୋଦ୍ଭବ, ସୁଶିକ୍ଷିତ, ଉଦାରମନା, ଉଗ୍ର ସଂସ୍କାରକ ଶ୍ରୀବତ୍ସ ବାବୁଙ୍କର ଜାତିପ୍ରଥା ପ୍ରତି ତାଚ୍ଛଲ୍ୟ ଆଦର୍ଶସ୍ଥାନୀୟ ଥିଲା । ଜାତି ଯେ ଗୋଟିଏ ମନୁଷ୍ୟ ସୃଷ୍ଟ ପ୍ରଥା ଓ ଦେଶ ଓ ଦଶର ଉନ୍ନତି ମାର୍ଗର ଯେ ଜଘନ୍ୟ ପରିପନ୍ଥୀ ଏକଥା ସେ ସ୍ପଷ୍ଟ ଉପଲବ୍‌ଧି କରିଥିଲେ ।

କେଶବ ଚନ୍ଦ୍ର ସେନ, ରାଜା ରାମ ମୋହନରାୟ, ବିବେକାନନ୍ଦଙ୍କ ତୁଳନାରେ ଯେ ଶ୍ରେଷ୍ଠ ହେଲେ ସୁଦ୍ଧା ଉଗ୍ର ସମାଜ ସଂସ୍କାରକ ଥିଲେ । ଉଚ୍ଚ, ନୀଚ ଭେଦ ଭାବରୁ ବହୁ ଦୂରରେ ଥିଲା ତାଙ୍କର ଆତ୍ମା । ସାମାଜିକ ସମନ୍ୱୟତା ତାଙ୍କର ପ୍ରଧାନ ଲକ୍ଷ୍ୟଥିଲା, ଯାହାକି ଆଜ ପଚାଶ ବର୍ଷ ପରେ ଭାରତ ଜାତୀୟ କଂଗ୍ରେସ୍ ଦେଶର ସର୍ବୋଦୟ ଉନ୍ନତିର ପ୍ରଧାନ ସୋପନ ରୂପେ ଗ୍ରହଣ ହୋଇଛି ।

ଶ୍ରୀବତ୍ସ ପଣ୍ଡାଙ୍କ ପ୍ରକାଶିତ ସଂସ୍କାର ସଂଗୀତାବଳୀ ଦୁଇଅଣା ଦେଇ ଆମ ସ୍କୁଲ ପିଲଙ୍କୁ କିଣିବାକୁ ପଡ଼ିଥିଲା । ଅତି ସୁନ୍ଦର, ସରଳ, ଉପାଦେୟ, ମର୍ମସ୍ପର୍ଶୀ ଭାଷାରେ ଲିଖିତ ରାଗିଣୀଯୁକ୍ତ ଗୀତ ଗୁଡ଼ିକ ଅନେକ ପିଲାଙ୍କର ମୁଖସ୍ଥ ହୋଇଥିଲା । ଏତେବର୍ଷ ପରେ ମୋର ମଧ୍ୟ ସ୍ମୃତି ପଟରୁ ଲିଭି ନ ଥିବା କେତୋଟି ପଂକ୍ତି ତଳେ ଉଲ୍ଲେଖ କଲି: —

'କହ୍ନାଇ ଦିଅ ଭାଇ, ପିତଳ ଖଡ଼ୁ ବାହୁ
ରମଣୀ ରତ୍ନାତୁଲ୍ୟ ନୁହଇ ହେ,
ପିନ୍ଧିଲେ ସରୁ କାଚ, ହାତଟି କେଡ଼େ ସ୍ୱଚ୍ଛ
× × × ଦିଶଇ ହେ " ଇତ୍ୟାଦି

ପଣ୍ଡା ମହାଶୟଙ୍କ ନିବାସ ଗୃହ ବଡମଠ ନିକଟ ଆମ ଘର ଆଗରେ ଅବସ୍ଥିତ ଥିଲା । ମୋର ବାପାଙ୍କ ସହିତ ବହୁବାର ତାଙ୍କର ମିଷ୍ଟାଳାପ ଶୁଣିବାର

ମୁଁ ଅବକାଶ ପାଇଛି । କଥା ତାଙ୍କର ଅତି ମିଷ୍ଟ, ଶିଷ୍ଟ, ଧୀର ଓ ସ୍ପଷ୍ଟ ଥିଲା । ମୁଁ ଯେମିତି ଉଚ୍ଚଶିକ୍ଷା ପାଇ ପାରିବ ସେଥି ବିଷୟରେ ଯତ୍ନବାନ୍ ହେବାକୁ ସେ ମୋର ପିତୃଦେବଙ୍କୁ ବାରମ୍ବାର ଚେତାଉ ଥାନ୍ତି । ସେହିକଥା ଆଜ ମୋ ଆଖି ଆଗରେ ଜଳ ଜଳ ଦିଶୁଛି ଓ ତାଙ୍କର ସୌମ୍ୟ ମୂର୍ତ୍ତି ଅବିସ୍ମରଣୀୟ ହୋଇ ରହିଛି ।

ଶିକ୍ଷା କ୍ଷେତ୍ରରେ ତାଙ୍କର ଅସାଧାରଣ ପାଣ୍ଡିତ୍ୟ ଥିଲା । ସେ ଇଂରାଜ, ଓଡ଼ିଆ, ସଂସ୍କୃତ, ତେଲୁଗୁ ଇତ୍ୟାଦିରେ ବ୍ୟୁତ୍ପତ୍ତି ଲାଭ କରିଥିଲେ । ସେତେବେଳର ଯୁଗରେ କୃତିତ୍ୱ କମ ଗୌରବର କଥା ନ ଥିଲା । ସେ ଏକାଧାରରେ ଲକ୍ଷ୍ମୀ ଓ ସରସ୍ୱତୀଙ୍କର ଆଶୀର୍ବାଦ ଲାଭକରିଥିଲେ । ଗୃହକର୍ମ ପ୍ରତି ତାଙ୍କର ବେଶୀ ଆଗ୍ରହ ବା ମମତା ନ ଥିଲା । ଧର୍ମପ୍ରତି ତାଙ୍କର ପ୍ରଗାଢ଼ ଅନୁରକ୍ତି ଥିବାରୁ ସେ ଆଜୀବନ ଧର୍ମ ଚର୍ଚ୍ଚାରେ ନିଜ ପ୍ରାଣକୁ ଉତ୍ସର୍ଗ କରି ଦେଇଥିଲେ । ସତ୍ୟ ପ୍ରତି ତାଙ୍କର ଅସାଧାରଣ ଉପାସନା ଥିଲା । ସେ ଆଜୀବନ ସତ୍ୟର ଅନୁସନ୍ଧାନରେ ବ୍ରତୀ ଥିଲେ । ସ୍ୱାମୀ ଦୟାନନ୍ଦ ସରସ୍ୱତୀ କୃତ ସତ୍ୟାର୍ଥ ପ୍ରକାଶର ସୁନ୍ଦର ଓ ସରଳ ଓଡ଼ିଆ ଅନୁବାଦ କରି ଜାତିର ଚିର ନମସ୍ୟ ହୋଇ ରହିଛନ୍ତି । ଏହି ଉପାଦେୟ ଗ୍ରନ୍ଥ ଅନ୍ୟାନ୍ୟ ବିଭିନ୍ନ ଭାଷାରେ ଅନୁଦିତ ହୋଇଥିଲେ ସୁଦ୍ଧା ଓଡ଼ିଆ ଭାଷାରେ ରୂପାନ୍ତରିତ ହୋଇ ନ ଥିଲା । ପଣ୍ଡା ମହାଶୟେ ଆର୍ଯ୍ୟ ଧର୍ମର ମୌଳିକ ବିଶେଷତ୍ୱ ଓ ପ୍ରତିଭାରେ ମୋହିତ ହୋଇ ଯାଇଥିଲେ ଓ ହିନ୍ଦୁ ଧର୍ମର କୁସଂସ୍କାରାଚ୍ଛନ୍ନ ରୀତି, ନୀତି, ପ୍ରଥା ଇତ୍ୟାଦିର ମୂଳୋତ୍ପାଟନ କରି ହିନ୍ଦୁ ଧର୍ମର ସମୁଜ୍ଜ୍ୱଳ ବିଭବ ବିକାଶ ପଥରେ ଯଥେଷ୍ଟ ଚେଷ୍ଟା କରି ଥିଲେ ।

ଆଜି ଶ୍ରୀବତ୍ସ ଜୟନ୍ତୀ ଓଡ଼ିଶାରେ ବିଭିନ୍ନ ଅଞ୍ଚଳରେ ପାଳିତ ହେଉଥିବା ଦେଖାଯାଏ । ଏହା ଦେଶବାସୀଙ୍କ ଉନ୍ନତ ଚରିତ୍ର ପ୍ରତୀକ ମାତ୍ର । ପ୍ରତିମା ପୂଜାର ଯୁଗ ଅତି ତୀବ୍ରରେ ଉଭେଇ ଯାଉଛି; କିନ୍ତୁ ପ୍ରତିଭା ପୂଜା ଯେ ଜାତିର ଉନ୍ନତିର ଶୁଭ ସଙ୍କେତ, ଏଥିରେ ଅଣୁ ମାତ୍ର ସନ୍ଦେହର ଅବକାଶ ନାହିଁ । ଏହି ଦିଗରୁ ଶ୍ରୀବତ୍ସ ପଣ୍ଡାଙ୍କ ଜୀବନରୁ ବହୁ ଆଲୋକରଶ୍ମି ଓ ପ୍ରେରଣାର ଉପାଦାନ ଯେ ସହଜରେ ସଂଗ୍ରହ କରିହେବ ସେଥିରେ ମୁଁ ଦୃଢ଼ ବିଶ୍ୱାସୀ ।

ଆଜି ଏହି ପୁଣ୍ୟ ଦିବସରେ ଏହି ପୁଣ୍ୟାତ୍ମାଙ୍କର ପ୍ରତି ମୋର ହୃଦୟର ଭକ୍ତି ଶ୍ରଦ୍ଧାଞ୍ଜଳୀ ଅର୍ପଣ କରୁଛି ।

ଶ୍ୟାମସୁନ୍ଦର ତରସିଆ
୧୮ । ୯ । ୭୫

# ଶ୍ରୀବସ୍ତ ଧର୍ମ

୧ । ବେଦରେ ଅଛି :—

ସତ୍ୟଂ ବ୍ରୁୟାତ୍, ପ୍ରିୟଂ ବ୍ରୁୟାତ୍
ମା ବ୍ରୁୟାତ୍ ସତ୍ୟ ମ୍ପ୍ରିୟମ୍ ।

କିନ୍ତୁ ଶ୍ରୀବସ୍ତ କହନ୍ତି —
ହେଲେ ହେଉ ଶରୀର ପତନ,
ନିଜମତ ନକର ଗୋପନ
ମୁହଁ ଦେଖା ଭାବ ଗୁଡ଼ ଜନ୍ମଥିବ
ଅପ୍ରିୟ ହେଉ ସତ୍ୟ ବଚନ ।

୨ । ଜନ୍ମଭୂମିର ଉନ୍ନତି ସାଧନ ସକାଶେ ସେ ଅନ୍ୟକାହାକୁ ଅପେକ୍ଷା କରୁ ନ ଥିଲେ କିମ୍ବା କୌଣସି ସଂସ୍ଥା ବା ସଂଘ ଉପରେ ନିର୍ଭର କରୁନଥିଲେ । ଏକାକୀ ଯାହାକିଛି କରିବାର କରି ଯାଉଥିଲେ । ସେ ଗାଇଛନ୍ତି—

କରୁଥିବ କର୍ତ୍ତବ୍ୟ ପାଳନ
ପାଳୁଥିବ ନୀତିର ନିୟମ
ବ୍ୟକ୍ତିଗତ ଭାବେ ନିଜେ କରୁଥିବ
ଜନ୍ମଭୂମି ଉନ୍ନତି ସାଧନ ।

୩ । ଅସ୍ପୃଶ୍ୟତା ନିବାରଣ ସମ୍ପର୍କରେ ସେ ଲେଖିଛନ୍ତି :—

ସଂସାର, ସାଗର, ବନ, ବରବଟ,
ସବୁ ଗଢ଼ିଛନ୍ତି ସେ ବିଶ୍ୱସାଇଁ
କୁକୁରକୁ କୋଳ କରି ମନୁଷ୍ୟକୁ
ନଛୁଇଁବା ବିଧି ପାରେକି ଥାଇ ?

କିନ୍ତୁ ଅସ୍ପୃଶ୍ୟ କେଉଁମାନେ ସେ ତାଙ୍କ ରଚିତ ଅଛିବ ଜାତିରେ କହିଛନ୍ତି । ସରକାରୀ କର୍ମଚାରୀ ଯିଏ ଲାଞ୍ଚ ଖାଏ, ବେପାରି ମହାଜନ ଯିଏ ସୋରିଷରେ ମାଣ୍ଡିଆ ମିଶାଇବା ଆଦି ଅପମିଶ୍ରଣ କରେ, ଗଉଡ଼ ଯିଏ ଦୁଧରେ ପାଣି ମିଶାଏ, ତେବେ ସେମାନେ ଅସ୍ପୃଶ୍ୟ ।

୪ । ସୁଶିକ୍ଷିତ କାହାକୁ କହନ୍ତି—ହ୍ୟାଟପ୍ୟାଣ୍ଟ ପିନ୍ଧା ବାବୁ ନୁହନ୍ତି; କିନ୍ତୁ—

କରିଥିବ ଯେ ସାହିତ୍ୟ ଜ୍ଞାନ,
ବୁଝିଥିବ ଇଂରାଜି ବିଜ୍ଞାନ
ବେଦାନ୍ତ ସିଦ୍ଧାନ୍ତ ତତ୍ତ୍ୱ ଜାଣି
ମନୁ ଛାଡ଼ିଥିବ କୁସଂସ୍କାରମାନ ।

୫ । ଦେଶ କାଳପାତ୍ର ବିଚାର ନକରି ସାମାଜିକ କୁସଂସ୍କାରର ଉଗ୍ର ସମାଲୋଚନା ଥିଲା ତାଙ୍କର ଜୀବନର ବ୍ରତ । ଅସ୍ପୃଶ୍ୟତା ଦୂରୀକରଣ, ବିଭିନ୍ନ ଜାତି ମଧ୍ୟରେ ସହଭୋଜନ ଓ ଅନ୍ତର୍ବିବାହ, ବିଧବା ବିବାହ, ବ୍ରାହ୍ମଣମାନଙ୍କ ପଣାଖିଆ ଓ ଭିକ୍ଷାବୃତ୍ତି କଟୁ ଓ ବ୍ୟଙ୍ଗ ପୂର୍ଣ୍ଣ ସମାଲୋଚନା, ପିତଳ ଖଡ଼ୁ ବାନ୍ଧି ବର୍ଜନ ଇତ୍ୟାଦି ସଂସ୍କାରମାନ ସେ ସଭାସମିତି କରି ବୁଝାଉଥିଲେ ଏବଂ କାହାକୁ ଅପେକ୍ଷା ନକରି ନିର୍ଭୀକ ଭାବରେ ଲେଖା, କବିତା ଓ ଖବର କାଗଜ ଦ୍ୱାରା ପ୍ରଚାର କରୁଥିଲେ ।

୬ । ଅନ୍ୟର ସମାଲୋଚନା ପ୍ରତି ଭ୍ରୂକ୍ଷେପ ନକରି ନିଜ ଗୋଡ଼ରେ ନିଜେ ଛିଡ଼ାହୋଇ ନିଜ ବିଚାରରେ ଯାହା ଠିକ ହେଲା, ତା ପାଳନ କରିବା ତାଙ୍କର ଏକ ମହତ୍ ଗୁଣ । ତାଙ୍କୁ ଅନେକେ ଉଗ୍ରସଂସ୍କାରକ ଓ ସମାଲୋଚକ ବୋଲି କହୁଥିଲେ । ରକ୍ଷଣଶୀଳ ପଣ୍ଡିତମାନେ ତାଙ୍କୁ "କଳାପାହାଡ଼" ଆଖ୍ୟା ଦେଉଥିଲେ ଗାଳିମାଡ଼ର ଭୟ ଦେଖାଉଥିଲେ । ତଥାପି ସେ କହୁଥିଲେ:—

ନିରପେକ୍ଷ କର୍ମୀ ସମାଜ ନିନ୍ଦାକୁ
କେବେ ନଡ଼ରି
ହେଉପଛେ ଶରୀର ପତନ
କର୍ତ୍ତବ୍ୟ କର୍ମ ଯା'ନ୍ତି କରି ।

କବିରାଜ ଶ୍ରୀ ବାସୁଦେବ ତ୍ରିପାଠୀ, ବୈଦ୍ୟ ପଞ୍ଚାନନ

---

# ସମୟାନୁବର୍ତ୍ତିତା

## ଦିନକର ଘଟଣା

୧୯୨୩ କି ୨୪ ସାଲର କଥା । ସେକାଳର କଲେକ୍ଟର ତାଙ୍କ ନା ସାରଙ୍ଗ ନରସିଂହ ରାଓ । ବିଲାତ ଫେରନ୍ତା ସେ ; ଅତି ଉଚ୍ଚକୋଟୀର ଲୋକ । ତାଙ୍କର ଗସ୍ତକ୍ରମ ଥିଲା ତନରଣ୍ଡା ଗୋବିକ୍ଷା ଭ୍ରମର ପରିଦର୍ଶନ ।

ପଣ୍ଡାବାବୁ ଯେଉଁ ଗୋଶାଳା ତ୍ତ୍ୱାବଧାନ କରୁଛନ୍ତି, ସେଇ ଜମିକୁ ଲଗି କେତେକ ପରମ୍ବୋକ୍ ଜମି ଦଖଲ କରିବାକୁ ପଣ୍ଡାବାବୁ ଅନୁମତି ମାଗିଥିଲେ । କଲେକ୍ଟର ମହାଶୟ ଉକ୍ତ ବିଷୟଟି ସମ୍ବନ୍ଧେ ଯାହାକିଛି ରାୟ ଦେବାପାଇଁ ସରଜମିନ୍ ତଦନ୍ତ ଉଦ୍ଦେଶ୍ୟରେ ସେ ଗୋଶାଳାକୁ ଆସିବାର କଥାଥିଲା । ସମୟ ଦେଇଥିଲେ ପୂର୍ବାହ୍ଣ ୯ଟା । ପଣ୍ଡାବାବୁ ସେହି ସମୟରେ ତାଙ୍କର ନିଜଗାଁ ମହାରରେ ରହୁଥାନ୍ତି । କଲେକ୍ଟରଙ୍କର ପ୍ରୋଗ୍ରାମ ପାଇ ସେ ଉକ୍ତ ଦିନ ଠିକ ୯ଟା ବେଳେ ଗୋଶାଳାରେ ଆସି ପହଞ୍ଚିଲେ ଓ କଲେକ୍ଟରଙ୍କୁ ଅପେକ୍ଷା କଲେ । ୯ଟା ହେଲା କଲେକ୍ଟର ସାହେବ ଆସିଲେ ନାହିଁ । ଆଉ ପାଞ୍ଚମିନିଟି ଅପେକ୍ଷା କଲେ, ତଥାପି ସାହେବ ମହାଶୟ ଆସିଲେ ନାହିଁ । ପଣ୍ଡାବାବୁ କହିଲେ ଓ୍ୱାଚ ଗୁଡ଼ିକ ସବୁବେଳେ ଠିକ୍ କାମ ଦିଅନ୍ତି ନାହିଁ । ହୁଏତ ସାହେବଙ୍କ ଘଡ଼ିଟି ଟିକିଏ ଡେରିରେ ଚାଲୁଥିବ. ଦେଖିବା ଆଉ ପଞ୍ଚ ମିନିଟି ଅପେକ୍ଷା କରିବା । ୯-୧୦ ବାଜିଲା । ସାହେବ ତଥାପି ଆସିଲେ ନାହିଁ । ପଣ୍ଡାବାବୁ ତହୁଁ କହିଲେ ଆଉ ଅପେକ୍ଷା କରିବା ନାହିଁ । ଏତେ ବଡ଼ ସାହେବ—ଫେରେ ଚଳନ୍ତ ଫେରନ୍ତା । ତଥାପି ସେ ପଦ ସମୟାନୁବର୍ତ୍ତୀତାର ଚାରିକଲେ ନାହିଁ-ତେବେ ସେଇଟା ମୋର ଦୁର୍ଭାଗ୍ୟ । ଏହା କହି ଶଗଡ଼ିଆକୁ ଡାକି କହିଲେ ଯେ ଶଗଡ ଠିକ୍ କର । ଘରକୁ ଫେରିଯିବା । ଏହା କହି ସେ ଚାଲିଗଲେ । ପ୍ରାୟ ବାରଟା ବେଳେ କଲେକ୍ଟର ସାହେବ ଆସିଲେ । ପଚାରିଲେ ପଣ୍ଡାବାବୁ କାହାନ୍ତି । ଗୋଶାଳାର ଜଣେ କର୍ମଚାରୀ କହିଲେ-ପଣ୍ଡାବାବୁ ଆପଣ ଦେଇଥିବା ସମୟ ପରେ ଆଉ ଦଶ ମିନିଟ ଅପେକ୍ଷା କଲେ । ତା ପରେ କହିଲେ ସାହେବ ବୋଧହୁଏ ଆଜି ଆଉ ଆସିବେ ନାହିଁ । ଚଳନ୍ତ ଫେରନ୍ତା କଲେକ୍ଟରଙ୍କର ପଦ ଆସିବା କଥା ତ ନିଶ୍ଚୟ ୯ଟା ୩୦ରେ ଆସିଯାଇଥାନ୍ତେ । ତାଲୁକାର ଅଧିକାଂଶ, ହୁଏତ ଆଉକିଛି ଜରୁରି କାମ ପଡ଼ିଥିବ । ସୁତରାଂ ପ୍ରୋଗ୍ରାମ ରଦ୍ଦ କରି ଦେଇଥିବେ । ଏହା କହି ସେ ଘରକୁ ଚାଲିଗଲେ ।

ତନଚଉଡ଼ା ଗ୍ରାମର ଶ୍ରୀ ରାଧାମୋହନ ଦାଶ ସେ ସମୟରେ ତାଙ୍କର କ୍ୟାମ୍ପ କ୍ଲର୍କ । ଦାଶ ମହାଶୟ ଏ ସମସ୍ତ ବିଷୟ ଇଂଲିଶରେ ଅନୁବାଦ କରି କହିଲେ । ସାହେବ ମହାଶୟ ଏ ସବୁ ଶୁଣି ଏକ ପ୍ରକାର ଅଭିଭୂତ ହୋଇଗଲେ । ସେ ଇଂଲିଶରେ କହିପକାଇଲେ Well, Is he such a strict disciplinarian. ? (ଆଚ୍ଛା ସେ ଏଡ଼େ କଡ଼ା, ସମୟାନୁବର୍ତ୍ତିତାର ବାଧ୍ୟ ଜଣେ") "Yes sir" ହଁ ଆଜ୍ଞା । ସାହେବ ମହାଶୟ ଖୁବ୍ ଖୁସି ହେଲେ ଯେ, ଆମ ଏ ଦେଶରେ ଏପରି ସମୟ ଜ୍ଞାନ ଥିବା ଲୋକ ଅଛନ୍ତି । ପୁଣି କହି ପକାଇଲେ

I should have come in time. I am sorry for my delay which ofcourse is unavoidable, ମୁଁ ଅବଶ୍ୟ ଠିକ୍ ସମୟରେ ଆସିବା ଉଚିତ ଥିଲା । ମୁଁ ତ ମୋର ଯାହା ଡେରି ହେଲା ତାହା ଅବଶ୍ୟ ଅପରିହାର୍ଯ୍ୟ । ତଥାପି ଏ ଡେରି ଲାଗି ମୁଁ ଦୁଃଖିତ ।

ମୁଁ ସେତେବେଳେ ୧୦ମ ଶ୍ରେଣୀରେ ପଢ଼ୁଥାଏ । ମୋର କେତେକ ସହପାଠୀଙ୍କ ସହ ଆମେ ସବୁ ଉକ୍ତ ଦିନ ଗୋଶାଳାକୁ ଆସି ଯେଉଁ ଯୌବନ ସୁଲଭ ଉଚ୍ଛୃଙ୍ଖଳତା ମଧ୍ୟରେ ପଣ୍ଡାବାବୁଙ୍କର ସେଇ ଦିନର ସମୟାନୁବର୍ତ୍ତିତାର ଆଦର୍ଶ ଆମମାନଙ୍କୁ ମଧ୍ୟ ଅଭିଭୂତ କରି ପକାଇଥିଲା । ତାଙ୍କର ନିଜର ସ୍ୱାର୍ଥ ଥିଲା । ଏତେବଡ଼ ସାହେବଙ୍କ ଦ୍ୱାରା ତାଙ୍କର ଉକ୍ତ ସ୍ୱାର୍ଥସିଦ୍ଧି ହେବାର କଥା । ତଥାପି ସ୍ୱାର୍ଥ ଅପେକ୍ଷା ସମୟାନୁବର୍ତ୍ତିତାକୁ ବେଶୀମୂଲ୍ୟ ଦେଇଥିଲେ । ଅନେକ ସମୟ ପର୍ଯ୍ୟନ୍ତ ଆମମାନଙ୍କ ମଧ୍ୟରେ ଏ ଘଟଣାଟି ବିଶ୍ଲେଷଣ କଲୁ ଓ ନିଜ ନିଜର ଉଚ୍ଛୃଙ୍ଖଳତା ଓ ସମୟ ଜ୍ଞାନର ଅଭାବ ହୃଦୟଙ୍ଗମ କରି ଲଜ୍ଜିତ ମଧ୍ୟ ହେଲୁ । ଆଜକୁ ପ୍ରାୟ ୪୦ ବର୍ଷର ଘଟଣା, ଉକ୍ତ ଘଟଣାର ସଂସ୍କାରଟି ମୋର ମାନସପଟରେ ସୁଦ୍ଧା ଉତ୍କୀର୍ଣ୍ଣ ହୋଇ ରହିଛି । ଆଉର ମଧ୍ୟ ମୁଁ କହିବି ଯେ-ଏପରି ଶୃଙ୍ଖଳା ଓ ସମୟଜ୍ଞାନ ଥିବା ଲୋକଙ୍କ ସଂଖ୍ୟା ହୁଏତ ଆଙ୍ଗୁଠିରେ ଗଣି ହୋଇଯିବ ।

ଶ୍ରୀ ଶ୍ରୀଶପାଦ ପତି

# ସାମାଜିକ ଅପବ୍ୟୟ

## ବାହାଘର

### ଲେଖକ—ଶ୍ରୀ ଅଧିରାଜ ମୋହନ ସେନାପତି

ଗଲା ବର୍ଷ ଗାଁଟିରେ ବହୁତ ଗୁଡ଼ିଏ ବିବାହ ଲଗ୍ନ ଥିଲା । ଆଜି ଯା ଘରେ ବାହାଘର ତ କାଲି ତା' ଘରେ ବାହାଘର । ବାହାଘର ବାଜାରେ ଜାନ ଅତଡ଼ା ପଡ଼ି ଯାଉଥାଏ । ଷାଠିଏ ବର୍ଷର ବୁଢ଼ାବୁଢ଼ୀମାନେ କହୁଥାନ୍ତି ଏକାବର୍ଷରେ ଏତେଗୁଡ଼ିଏ ବାହାଘର ତାଙ୍କ ଜୀବନରେ ଦେଖି ନଥିଲେ ।

ଶ୍ୟାମ ପରିଡ଼ାର ପୁଅ ମଧୁସାଙ୍ଗରେ ଦୈତ୍ୟାରି ଭଞ୍ଜତର ଝିଅ ସରସ୍ୱତୀର ବାହାଘର ଖୁବ୍ ଜାକଜମକରେ ହୋଇଗଲା । ଖିଆପିଆ, ନାଟତାମସା, ମଉଜ ମଜଲିସର ସୀମା ରହିଲା ନାହିଁ । ଲୋକେ ଖୁବ୍ ବାହାବା ଦେଲେ ।

ବାହାଘର ସରିଗଲା । ଚଉଠି ବି ଗଲା । ବନ୍ଧୁବାନ୍ଧବମାନେ ବିଦାୟ ନେଇ ଯେଝା ଘରକୁ ବାହୁଡ଼ିଲେ । ଘରେ ଖୁବ୍ ଗହଳଚହଳ ଲାଗିଥିଲା । ଏବେ ସବୁ ଚୁପ୍ ଚୁପ୍ ।

ଶ୍ୟାମ ପରିଡ଼ା ଥିଲାବାଲା ଲୋକ । ଦରକାର ପଡ଼ିଲେ ହଜାରେ ଦୁଇ ହଜାର ନଗଦ ଗଣି ଦେଇ ପାରିବ । ତେବେ ବି ପୁଅ ବାହାଘର ପାଇଁ ତାଙ୍କୁ ଗୁଡ଼ାଏ ଟଙ୍କା କରଜ କରିବାକୁ ପଡ଼ିଲା । ପାଣିସୁଅ ପରି ଖରଚ କଲେ ଯେ କୌଣସି ଲୋକ ଦେଉଳିଆ ହୋଇଯିବାର କଥା । ପଇସାବାଲା ଲୋକେ ବି ପୁଅଝିଅ ବାହା କରାଇ ସର୍ବସ୍ୱାନ୍ତ ହୋଇଛନ୍ତି ।

ଦୈତାରି ଗଉଡ଼ କଥା ନିଆରା । ସେ ତ ସାହାନେ ନିଅଣ୍ଟିଆ ଲୋକ ? ଖାଲି ଯୌତୁକ ବାବଦରେ ତା'ର ଖରଚ ହେଲା ଦୁଇ ହଜାର ପାଞ୍ଚଶହ ଟଙ୍କା । ତା' ଛଡ଼ା ବେଦୀ ଉପରେ ନଗଦ ହଜାରେ ଟଙ୍କା ଗଣିବାକୁ ପଡ଼ିଲା । ବରପକ୍ଷ ଅଡ଼ିବସିଲେ ଏତେକ ଟଙ୍କା ବେଦୀ ଉପରେ ନ ଥୋଇଲେ ହାତଗଣ୍ଠି ପଡ଼ିବ ନାହିଁ । ନ ଦେବାର ଗତି ନାହିଁ । ନୋହିଲେ ଝିଅଟା ଯେ ଚିରକାଳ ପାଇଁ ଅବବାଡ଼ି ହୋଇ ରହିବ । ଆଉ ଆଉ ଖରଚ ତ ପୁଣି ଅଛି । ଲୁଗାପଟା, ଗହଣାଗାଣ୍ଠି, ଖିଆପିଆ ସବୁ ଲଗାଇ ପାଞ୍ଚହଜାର ଟଙ୍କା ଖରଚ ହୋଇଗଲା । ଏ ମହର୍ଗ କାଳରେ ପଇସାକ ଜାଗାରେ ଚାରି ପଇସା ଖରଚ । ତେବେ ବି ଖରଚର ସୀମା ରହୁ ନାହିଁ । ଟଙ୍କା ପଇସା ଯଦି ଗଛରେ ଫଳୁଥାନ୍ତା, ତେବେ ବେପରୁଆ ଖରଚ କରିବାରେ ଆପତ୍ତି ନଥାନ୍ତା କିନ୍ତୁ କଷ୍ଟରେ ଉପାର୍ଜିତ ଧନର ଅପବ୍ୟୟ ହେଲେ କାହାର ଦେହ ସହିବ କହିଲ ?

ବିବାହ ଗୋଟିଏ ସାମାଜିକ ପ୍ରଥା । ଏଥିରେ କେତେ ଖରଚ କରିବାକୁ ହେବ ତା'ର କୌଣସି ଧରାବନ୍ଧା ନିୟମ ନାହିଁ । ନିଜର ଅବସ୍ଥାକୁ ଚାହିଁ ବୁଝି ବିଚାରି ଖରଚ କଲେ ଧାରକରଜ କରିବା ପର୍ଯ୍ୟନ୍ତ କଥା ଯିବ ନାହିଁ । ଲୋକ ଦେଖାଣିଆ ଆଡ଼ମ୍ବର କରି, ବୃଥାରେ ଗୁଡ଼ାଏ ଖରଚ କରି ଲୋକେ ଅଭାବକୁ ଡାକି ଆଣୁଛନ୍ତି ସିନା ?

ଏଇ ଦେଖ ନାହିଁ ଦୈତାରି ଗଉଡ଼ କଥା ? ଝିଅ ବାହାଘର ପରେ ତା' ମୁଣ୍ଡରେ କିଏ ଯେମିତି ଗୋଟାଏ ବଡ଼ ବୋଝ ଲଦି ଦେଇଛି । ଚିନ୍ତା ଭାରରେ ସେ ଲଇଁପଡ଼ିଲାଣି । ଏ ଅବସ୍ଥା ହେଲା କାହିଁକି ? ବାହାଘରରେ ଗୁଡ଼ାଏ ବୃଥା ଖରଚ କରି ତ ? ବାଜାବାଲା ଆସିଲେ ଦୁଇ ଦଳ । ଗୋଟିପୁଅ ନାଚ ହେଲା ଦୁଇ ରାତି । ଖିଆପିଆ ହେଲା ବଡ଼ିଆ ଧରଣର—ପଲଉ, ମାଛ,

ମାଂସ, ଡ଼ାଲି, ଭଜା, ଖଟେଇ, ପୁର, ପାୟସ, ପାମ୍ପଡ଼ ଇତ୍ୟାଦି । ତା' ଉପରେ ପୁଣି ପାଚିଲା ଆମ୍ବ ଆଉ ମିଷ୍ଟାନ୍ନ । ମିଷ୍ଟାନ କ'ଣ ଗୋଟାଏ ପ୍ରକାରର, ଗଣି ଗଣି ପାଞ୍ଚ ପ୍ରକାର ମିଷ୍ଟାନ୍ନ—ରାଜଭୋଗ, ସନ୍ଦେଶ, ରସଗୋଲା, ଲଡ଼ୁ, ଜଲେପି । ମଣିଷର ପେଟ ତ ଗୋଟାଏ । ଯେତିକି ପେଟରେ ଧରିବ ସେତିକି ସିନା ଖାଇବ ? ପତ୍ରରେ ଗୁଡ଼ାଏ କୁଢ଼େଇ ଦେଇଗଲେ ସେ ହଜମ କରିବ କ'ଣ ? ଲୋଭରେ ପଡ଼ି ଲୋକେ ଅବଶ୍ୟ ଗୁଡ଼ାଏ ଖାଇଦିଅନ୍ତି । ତାର ଫଳ ହୁଏ ବଦହଜମି ଆଉ ଝାଡ଼ା ।

ବରଯାତ୍ରୀଙ୍କ ଖିଆପିଆରେ ସବୁଠୁ ବେଶୀ ଅପବ୍ୟୟ ହେଲା । ବରଯାତ୍ରୀ ଆସିଥିଲେ ଦୁଇ କୋଡ଼ି ପାଞ୍ଚ । ଅଧିକ ଲୋକ ମିଳିଥିଲେ ଆଉ ପାଞ୍ଚ ଜଣ ଆସିଥାନ୍ତେ । ସେଦିନ ବହୁତ ଜାଗାରେ ବାହାଘର ଥିଲା । ଲୋକସବୁ ବାଣ୍ଟି ହୋଇ ଯାଇଥିଲେ ।

ବରଯାତ୍ରୀଙ୍କ ଖିଆପିଆରେ ସନ୍ତୁଷ୍ଟ କରି ନ ପାରିଲେ ବାହାଘରରେମହା ବିଭ୍ରାଟ ଘଟିବ—ଏହା ଜାଣି ଦୈତ୍ୟାରି ବରଯାତ୍ରୀଙ୍କ ପତ୍ରରେ ଖୁବ୍ ବେଶୀ ବେଶୀ ପରଶିବାକୁ ପରଶୁଣିଆଙ୍କୁ ଆଗରୁ କହି ଦେଇଥାଏ । ଖାଇବା ଲୋକ ଏମିତି ଯେ ଦରକାର ନ ଥିଲେ ମନା କରିବେ ନାହିଁ । କାହିଁକି ନା ଗୋଟାଏ ଶାସ୍ତ୍ରବଚନ ଅଛି—

ହୁଁ ହୁଁ ଦଦ୍ୟାତ୍, ନାନା ଦଦ୍ୟାତ୍
ନ ଦଦ୍ୟାତ୍ ବ୍ୟାଘ୍ରଝମ୍ପନେ ।

ଏହାର ଅର୍ଥ ଏହି ଯେ, ଖାଇବା ଲୋକ ହୁଁ ହୁଁ କହିଲେ ତା ପତ୍ରରେ ଖାଇବା ପଦାର୍ଥ ଦେବ, ନା ନା କହିଲେ ବି ଦେବ । କେବଳ ଗୋଡ଼ହାତ ହଲାଇ ବାଘପରି ଝାମ୍ପ ମାରିଲେ ଦେବା ବନ୍ଦ କରିବ ।

ବରଯାତ୍ରୀଙ୍କର ବୁଝିବା ଉଚିତ ଯେ ପତ୍ରରେ ଗୁଡ଼ାଏ ନେଇ ଛାଡ଼ିବା ବାହାଦୁରି କମ୍ ନୁହେଁ । ପତ୍ରରେ ଯେତିକି ଛାଡ଼ିଗଲ, ତାହା ଅକାରଣେ ନଷ୍ଟ ହେଲା । ଅନ୍ୟ ଲୋକେ କ'ଣ ସେତିକି ଖାଇ ନ ଥାନ୍ତେ ? ଦୁଃଖୀରଙ୍କୀ ଖାଇଥିଲେ କେତେ ଧନ୍ୟ ଧନ୍ୟ କହିଥାନ୍ତେ ।

ଭଲ ଭଲ ମୂଲ୍ୟବାନ ପଦାର୍ଥର ଯେ ଏପରି ଅପଚୟ ଘଟୁଛି ଏଥିପାଇଁ ଦୋଷ କାହାକୁ ଦେବୁ ? ଦୋଷ ତୁମର, ଦୋଷ ଆମର । ଦୋଷୀ ସମସ୍ତେ । ଦୋଷୀ ଆମ ସମାଜ । ମନୁଷ୍ୟ ସାମାଜିକ ଜୀବ । ସମାଜକୁ ଛାଡ଼ି ମନୁଷ୍ୟ ଚଳି

ପାରନ୍ତି ନାହିଁ । ଜଣ ଜଣ କରି ପ୍ରତ୍ୟେକ ବ୍ୟକ୍ତିଙ୍କୁ ନେଇ ସମାଜ ଗଠିତ ହୋଇଅଛି । ତମେ ଆମେ କୌଣସି ଲୋକ ଦୋଷ କଲେ ସମାଜ ଦୂଷିତ ହେବ । ମନୁଷ୍ୟ ଶରୀରର କୌଣସି ଗୋଟାଏ ଅଙ୍ଗ ପୀଡ଼ିତ ହେଲେ ସମସ୍ତ ଶରୀର ଏହି ପୀଡ଼ା ଅନୁଭବ କରେ । ପେଟରେ ଅସୁଖ ହେଲେ, ଖାଲି ପେଟ କ'ଣ କଷ୍ଟ ପାଏ ? ଦେହଟା ଯାକ ଅବସନ୍ନ ବୋଧ ହୁଏ । କିଛି କାମଦାମ କରିବାକୁ ମନ ଲାଗେ ନାହିଁ । ସେହିପରି ସମାଜର କୌଣସି ଲୋକ—ଶ୍ୟାମ ହେଉ ବା ଦୈତ୍ୟାରି ହେଉ — ଯଦି କିଛି ଦୋଷତ୍ରୁଟି କରେ ତାହାର ପ୍ରଭାବ ସମାଜ ଉପରେ ନିଶ୍ଚୟ ପଡ଼ିବ ।

ଶ୍ୟାମ ଆଉ ଦୈତ୍ୟାରି ବାହାଘରରେ ଗୁଡ଼ାଏ ଅପବ୍ୟୟ କଲେ । ଶ୍ୟାମର ଅପବ୍ୟୟ କଥା ଶୁଣିବ ? ବର ସାଙ୍ଗରେ ଯେଉଁ ଶୋଭାଯାତ୍ରା ବାହାରିଲା ସେଥିରେ ବ୍ୟାଣ୍ଡବାଜା ବାଜିଲା । ରାସ୍ତା ଦୁଇ ପାଖରେ ଦୁଇଦଳ ଲୋକ ଗ୍ୟାସ ଆଲୁଅ ଧରି ଚାଲିଥାନ୍ତି । ରଙ୍ଗିନ କାଗଜ ଓ ଜରିରେ ତିଆରି ଫୁଲଝାଡ଼ ଆଲୁଅରେ ଝକମକ ହଉଥାଏ । ବାଟସାରା ତୋଡ଼ା ବାଣ ଫୁଟୁଥାଏ । ଆକାଶରେ ଆତସବାଜିର ଦୃଶ୍ୟ ଦୂରଦୂରାନ୍ତରକୁ ଦେଖାଯାଉଥାଏ । ଏ ସବୁଥିରେ ଶ୍ୟାମର ଖରଚ ହୋଇଥିଲା ଅଢ଼େଇ ହଜାର ଟଙ୍କା । ଏହାଛଡ଼ା ଆଉ ଯାହା ଯିମିତି ଖରଚ ହୋଇଥିବ ଅନୁମାନ କରିନିଅ ।

ମଣିଷ ଠକି ଶିଖେ । ଏଇ ବାହାଘର ପରେ ଶ୍ୟାମ ଆଉ ଦୈତ୍ୟାରି ଗୋଟିଏ ବଡ଼ ଶିକ୍ଷା ପାଇଲେ ।

ସରସ୍ୱତୀ ତଳକୁ ଦୈତ୍ୟାରିର ଆଉ ଗୋଟିଏ ଝିଅ ଥାଏ ଯଶୋଦା । ଯଶୋଦା'ର ବିବାହ ହେବାର ବୟସ ହୋଇଗଲା । ବରପାତ୍ର ଖୋଜାଚାଲିଲା । କେତେ ଜାଗାରେ କଥା ଠିକ୍ ହେଲା । ସବୁଠି କିଛି ନା କିଛି ଗୋଟାଏ କେଁ ବାହାରିଲା । ଶେଷକୁ ଶ୍ୟାମର ମଝିଆଁ ପୁଅ ଯାଦବ ସାଙ୍ଗରେ ବିବାହ ହେବାର କଥା ଛିଡ଼ିଲା । ଦେବାନେବା କଥା ଉଠିଲା ନାହିଁ । ଯୌତୁକ କଥା ନେଇ ବାହାଘରରେ ସବୁ କନ୍ଦଳର ସୃଷ୍ଟି ହୁଏ । ବରପିତା ଶ୍ୟାମ ଏଥର ସେ କଥା ମୁହଁରେ ଧରିଲା ନାହିଁ । ବାହାଘର ସୁରୁଖୁରୁରେ ହୋଇଚଲିଲା । ସେ ଯାହାର ଶକ୍ତିକୁ ଚାହିଁ ଖରଚ କଲେ । ବାଇଦ ବାଜିଲା, ବନ୍ଧୁବାନ୍ଧବମାନେ ନିମନ୍ତ୍ରଣ ପାଇ ଶୁଭକାର୍ଯ୍ୟରେ ଯୋଗଦେଲେ । ବେଦୀ ଉପରେ ପୂଜାଅର୍ଚ୍ଚା ଯେମିତି ହେବାର କଥା ସବୁ ହୋଇଗଲା । ସାଦାସିଧା ଧରଣର ଭୋଜି ହେଲା । ସରୁ ଚାଉଳର ଅନ୍ନ, ଗୁଆଘିଅ, ଡାଲି, ମାଛତରକାରି, ଘାଣ୍ଟି, ଆମ୍ବିଳ, ଖିରି, ମିଠେଇ—

ଏଇ ହେଲା ଭୋଜର ସାମଗ୍ରୀ । ଲୋକେ ଏ ଭୋଜ ଖାଇ ପରମ ସନ୍ତୋଷ ଲାଭ କଲେ । ବଜାରର ଗନ୍ଧିଆ ଘିଅ ପର୍‌ପର୍ ପଲଉ, ସଡ଼୍ ସଡ଼ ମାଂସ ତରକାରି, ଗୁରି ପାଞ୍ଚ ପ୍ରକାର ମିଠେଇ—ଏସବୁ ଖାଇ ଲୋକଙ୍କ ମୁହଁ ବାନ୍ଧିଯାଏ—ଅଜୀର୍ଣ୍ଣ ହୁଏ, ଝାଡ଼ା ହୁଏ ।

ଦୈତ୍ୟାରି ଆଉ ଶ୍ୟାମ ଏବେ ବୁଝିଲେଣି ଯେ ବାହାଘରରେ ଗୁଡ଼ାଏ ଅଯଥା ଖର୍ଚ୍ଚ କରିବା ବୁଦ୍ଧିମାନ ଲୋକର କାମ ନୁହେଁ । ସେଥିପାଇଁ ଏଥର ବାହାଘରରେ ଲୋକଦେଖାଣିଆ ବୃଥା ଆଡ଼ମ୍ବର କିଛି ନ ଥିଲା । ସାଇ ପଡ଼ଶା, ଦେଶଲୋକେ ଜାଣିଲେ ଯେ ବାହାଘରରେ ଗୁଡ଼ାଏ ବୃଥା ଖରଚ କରିବା ଆଦୌ ଉଚିତ ନୁହେଁ ।

ତେବେ ଯୌତୁକପ୍ରଥା ସମାଜରୁ ଏକାବେଳକେ ଉଠାଇ ଦେଇହେବ ନାହିଁ । ଝିଅଟା କାଳକାଳକୁ ଘରଛାଡ଼ି ଯାଉଛି, ବାପମାଙ୍କ ଦେହ ଧଇବ କେତେକେ ? କୁଲା, ବାଉଁଶିଆ, ଗୁଞ୍ଜୁଣୀଟାରୁ ଆରମ୍ଭ କରି ଗହଣାଗଣ୍ଠି, ଖଟମଠା, ହାତବନ୍ଧା ଘଡ଼ି, ଝରକଲମ, ମଟରଗାଡ଼ି ପର୍ଯ୍ୟନ୍ତ ସବୁଜିନିଷ ଯୌତୁକ ତାଲିକାରେ ସ୍ଥାନପାଏ । ଏ ବାବଦରେ ହଜାର ହଜାର ଟଙ୍କା ଖରଚ ହୁଏ । ଯୌତୁକଟା ଦିଆଯାଉ, କିନ୍ତୁ ଅଳ୍ପ ଖରଚରେ ଅନ୍ୟ ପ୍ରକାରେ ହେଲେ ମନ୍ଦ କଅଣ ?

ଆମଦେଶରେ ମୁଣ୍ଡପିଛା ପ୍ରାୟ ତିନି ପାଞ୍ଚ ଜମି ପଡ଼ୁଛି । ଏଥିରୁ ଅଧିକାଂଶ ଜମିରେ ପାଣି ମଡ଼ାଇବାର କୌଣସି ବ୍ୟବସ୍ଥା ନାହିଁ । ଚାଷପାଇଁ ଇନ୍ଦ୍ରଦେବତାଙ୍କ ଉପରେ ପୂରାପୂରି ନିର୍ଭର କରିବାକୁ ପଡ଼େ । ଧାନ ବା ବର୍ଷା-ଦିନିଆ ଅନ୍ୟ ଶସ୍ୟ ଛଡ଼ା ଆଉ କିଛି ହୋଇପାରେ ନାହିଁ । ଏସବୁ ଜମିରେ ଯଦି ପାଣିର ସୁବିଧା ହୁଅନ୍ତା ତେବେ ବର୍ଷସାରା ଅନେକ ଶସ୍ୟ, ପନିପରିବା ଓ ଫଳମୂଳ ଚାଷ ହୋଇପାରନ୍ତା ।

ଏ ସୁବିଧା ହେବ କିପରି ? ଆଜିକାଲି ଅବଶ୍ୟ ଗାଁମାନଙ୍କରେ କୂଅ ପୋଖରୀ ଖୋଳାଇବାର ବ୍ୟବସ୍ଥା ସରକାର କରୁଛନ୍ତି । କିନ୍ତୁ ଏ ଉଦ୍ୟମ ଯଥେଷ୍ଟ ନୁହେଁ । ଗୋଟାଏ ସୁବିଧାଜନକ ଉପାୟ ହେଉଛି "ଯେତେ ଝିଅ" । ସେତେ କୂଅ । ବାହାଘରରେ ଝିଅ ଜୋଆଇଁଙ୍କୁ ବାପାମା, ବନ୍ଧୁବାନ୍ଧବ ଅନେକ ଯୌତୁକ ଦିଅନ୍ତି । ବାହାଘରର ଆଡ଼ମ୍ବର ରକ୍ଷାକରିବା ପାଇଁ ଏସବୁ ଯୌତୁକ ଜିନିଷରେ ବହୁତ ଖରଚ କରିବାକୁ ହୁଏ । ଏପରି ଅକାରଣ ଖରଚ ନ କରି ଗୋଟାଏ ଲେଖାଏଁ କୂଅ ଜୋଆଁଇର ଜମିରେ ଖୋଳାଇଦେବା ଭଲ ।

ତାହାହେଲେ ଆମ ଦେଶରେ କୂଅର ଅଭାବ ରହନ୍ତା ନାହିଁ । ଏଥିରୁ ପାଣି ମଡାଇ ଫସଲ କଲେ, ଦେଶ ସବୁଜ ହୋଇଯାନ୍ତା । ଏଥିପାଇଁ ସରକାରଙ୍କ ସାହାଯ୍ୟ ଲୋଡ଼ା ନାହିଁ ।

ଏହିପରି ପ୍ରତିବର୍ଷ ଲକ୍ଷ ଲକ୍ଷ କୂଅ ଖୋଳା ହୋଇପାରିବ । ଗାଁ ଗୁଡ଼ିକରେ ବହୁତ ଲୋକଙ୍କୁ କାମଧନ୍ଦା ମିଳିପିବ । ଜମି ଓ ଜଳସେଚନର ସୁବିଧା ହେଲେ ଦେଶରେ ଖାଦ୍ୟ ବସ୍ତୁର ଅଭାବ ରହିବ ନାହିଁ ।

ଏ ଗୋଟିଏ ନୂଆ କଥା । କିନ୍ତୁ ହସରେ ଉଡ଼ାଇ ଦେବାର କଥା ନୁହେଁ । ନୂଆକଥାଟେ ଚଳାଇବା ପାଇଁ ଟିକିଏ ସାହସ ଦରକାର । ଆମଲୋକଙ୍କ ଭିତରେ କ'ଣ ଏତିକ ସାହସ କାହାରି ନାହିଁ ? କେତେଜଣଲୋକ ଅଗୁଆ ହୋଇ ଯୁଅଯୌତୁକ ପ୍ରଥା ଚଳାଇଦେଲେ ଏହା ଆମ ସମାଜର ଗୋଟାଏ ହିତକର ଆଦର୍ଶ ହୋଇ ରହିବ ।

---

# ଯେଉଁ ବାଣୀ ତାହାଙ୍କୁ ଉଦ୍‌ବୁଦ୍ଧ କରିଥିଲା

ଲେଖକ—ଶ୍ରୀମତୀ ଶଚୀନ୍ଦ୍ରାଦେବୀ
ଭୁବନେଶ୍ୱର

ସ୍ୱର୍ଗତ ଶ୍ରୀବତ୍ସ ପଣ୍ଡା ଯେଉଁ କାର୍ଯ୍ୟଗୁଡ଼ିକ ପାଇଁ ଅମ୍ଭମାନଙ୍କଠାରେ ଆଜି ସ୍ମରଣୀୟ ହୋଇ ରହିଛନ୍ତି, ସେହି ସବୁର ପ୍ରେରଣା ଲାଭ କରିଥିଲେ ସ୍ୱାମୀ ଦୟାନନ୍ଦ ସରସ୍ୱତୀଙ୍କ ରଚିତ ବୈଦିକ ସାହିତ୍ୟରୁ । ସ୍ୱାମୀ ଦୟାନନ୍ଦଙ୍କ ରଚିତ 'ସତ୍ୟାର୍ଥ ପ୍ରକାଶ' ପାଠ କରିବାପରେ ତାଙ୍କର ଜୀବନଚକ୍ର ବଦଳି ଯାଇଥିଲା । ଋଷି ଦୟାନନ୍ଦଙ୍କ ବୈଦିକ ବ୍ୟାଖ୍ୟାରେ ସେ ମୁଗ୍ଧ ହୋଇଯାଇଥିଲେ । କହିବାକୁ ଗଲେ ତହିଁରୁ ସେ ନାସ୍ତିକରୁ ଆସ୍ତିକ ଭବାପନ୍ନ ହେଲେ । ନିଜେ ସେହି ପବିତ୍ର ଗ୍ରନ୍ଥର ଓଡ଼ିଆ ଅନୁବାଦ କରିଥିଲେ ଓ ସମାଜ ସଂସ୍କାର ସଂବନ୍ଧୀୟ ବହୁ ପୁସ୍ତକ ରଚନାରେ ନିଜର ଆଦର୍ଶମୟ ଜୀବନ ନିୟୋଜିତ କରିଥିଲେ । 'ସତ୍ୟାର୍ଥ-ପ୍ରକାଶ' ତାହାଙ୍କୁ ନୂତନ ଚକ୍ଷୁ ପ୍ରଦାନ କରିଥିଲା ।

ମୋର ପରମ ସୌଭାଗ୍ୟ ଯେ, ମୋର ପରମ ପୂଜ୍ୟ ଶ୍ୱଶୁରଦେବ ଶ୍ରୀ ଲିଙ୍ଗରାଜ ଶର୍ମା (ପୋଲସରା, ଗଞ୍ଜାମ ବର୍ତ୍ତମାନ ବୃଦ୍ଧ ଆଶ୍ରିତ ବାନପ୍ରସ୍ଥ) ଶ୍ରୀବତ୍ସ ପଣ୍ଡା କେବଳ ସ୍ୱଜନ ଆତ୍ମୀୟ ନଥିଲେ, ତାହାଙ୍କ ଅନ୍ତରଙ୍ଗ ବନ୍ଧୁ ଓ ଶିଷ୍ୟ ମଧ୍ୟ ଥିଲେ । ଉତ୍କଳରେ ବୈଦିକ ଧର୍ମର ପ୍ରଚାର ସମ୍ବନ୍ଧୀୟ ବହୁତ ବିଷୟ ମୋର ଶ୍ୱଶୁରଦେବ ଙ୍କଠାରୁ ଉପଦେଶ ପାଇଥିଲେ । ନିଜର ସମସ୍ତ ମନୋଭାବନା ସେ ତାହାଙ୍କୁ ଖୋଲି କହୁଥିଲେ । ବହୁ ଅବସରରେ ମୋର ଶ୍ୱଶୁରଙ୍କଠାରୁ ସ୍ୱର୍ଗତ ପଣ୍ଡାଙ୍କ ଗୁଣାବଳୀ ଓ କାର୍ଯ୍ୟକଳାପ ସମ୍ବନ୍ଧରେ ଆମେ ଶୁଣିବାକୁ ପାଉ, ତଦ୍ୱାରା ଆମର ସମଗ୍ର ପରିବାର ବୈଦିକ ଧର୍ମରେ ଅବଲମ୍ବିତ ହୋଇଛୁ । ମୋର ସ୍ୱାମୀ (ଶ୍ରୀ ପ୍ରିୟବ୍ରତ ଦାସ, ଏକଜକ୍ୟୁଟିଭ ଇଞ୍ଜିନିଅର) ବହୁବାର ଉତ୍ତର ଭାରତ ଭ୍ରମଣରେ ଯାଇ ସେଠାରେ ସ୍ୱର୍ଗତ ପଣ୍ଡାଙ୍କ ସଂପର୍କରେ ଆସିଥିବା ବହୁ ସଜ୍ଜନ ଓ ଆର୍ଯ୍ୟସମାଜୀଙ୍କ ସହ ଆଲୋଚନା କରିବାର ସୁଯୋଗ ପାଇଛନ୍ତି । ତାହାଙ୍କ ମହତ୍ ଗୁଣର ବହୁ ଦୃଷ୍ଟାନ୍ତ ଶୁଣି ଆମ୍ଭମାନଙ୍କୁ ଶୁଣାଇଛନ୍ତି ।

ଆର୍ଯ୍ୟ ସମାଜର ପ୍ରତିଷ୍ଠାତା ଋଷି ଦୟାନନ୍ଦଙ୍କ ରଚିତ ବୈଦିକ ସାହିତ୍ୟ ପାଠ କରି ବୈଦିକ ଧର୍ମ ପ୍ରତି ସ୍ୱର୍ଗତ ପଣ୍ଡା ଅତ୍ୟନ୍ତ ଶ୍ରଦ୍ଧାଳୁ ହୋଇଥିଲେ । ପରିଶେଷରେ ସେଥି ମଧ୍ୟରେ ସେ ଅବଶିଷ୍ଟ ଜୀବନ ନିୟୋଜିତ କରିଥିଲେ । ଋଷି ଦୟାନନ୍ଦ ସାଧାରଣ ବ୍ୟକ୍ତି ନଥିଲେ । ସେ ଥିଲେ ଯୁଗ ପ୍ରବର୍ତ୍ତକ । ବସ୍ତୁତଃ, ସମାଜ ସଂସ୍କାର ପ୍ରଭୃତି ଧାର୍ମିକ ଆନ୍ଦୋଳନଦ୍ୱାରା ସେ ଧର୍ମର ଉତ୍ତର ଭାରତରେ ଏକ ନୂତନ ଯୁଗ ସୃଷ୍ଟି କରିଥିଲେ ।

ମୋର ଶ୍ୱଶୁର କହନ୍ତି ଯେ ଧର୍ମଗ୍ରନ୍ଥ ପାଠ ବେଳେ ସ୍ୱର୍ଗତ ପଣ୍ଡା ନିଜର ରୁଚିକର ବିଷୟ ଗୁଡ଼ିକୁ ଦୁଇ ତିନିବାର ପଢ଼ନ୍ତି ଓ ସେସବୁକୁ ରେଖାଙ୍କିତ କରନ୍ତି । ସେ କହନ୍ତି ଯେ, ଏସବୁ ସ୍ଥଳ ଅତ୍ୟନ୍ତ ପ୍ରେରଣା – ଦାୟକ । ଋଷି ଦୟାନନ୍ଦଙ୍କ ଗ୍ରନ୍ଥର ଏପରି ସ୍ଥଳମାନଙ୍କୁ ସେ ପ୍ରାୟଶଃ କଣ୍ଠସ୍ଥ କରିଥିଲେ । ଋଷିଙ୍କର ଏହିସବୁ ବାଣୀ ତାହାଙ୍କ ଅନ୍ତରରେ ଥିଲା । ନିଜର ରଚନାମାନଙ୍କରେ ସେସବୁକୁ ବହୁବାର ସେ ଉଦ୍ଧାର କରୁଥିଲେ ଓ ଧର୍ମ ସଭାମାନଙ୍କରେ ଉଚ୍ଚାରଣ କରୁଥିଲେ ।

ବିଳମ୍ବରେ ହେଲେ ସୁଦ୍ଧା ଆଜି ସ୍ୱର୍ଗତ ପଣ୍ଡାଙ୍କ ଜନ୍ମ ଦିବସ ଉପଲକ୍ଷେ ଏକ ସ୍ମରଣିକା ପ୍ରକାଶ ପାଉଛି । ଆନନ୍ଦର କଥା, ଶ୍ରୀଯୁକ୍ତ ବାଞ୍ଛାନିଧି ପଟ୍ଟନାୟକ ପ୍ରମୁଖ ତାହାଙ୍କ ପ୍ରିୟ ସହଚରମାନେ ଏହା ପ୍ରକାଶ କରୁଛନ୍ତି । ଋଷି ଦୟାନନ୍ଦଙ୍କ ଯେଉଁ ସବୁ ବାଣୀ ସ୍ୱର୍ଗତ ପଣ୍ଡାଙ୍କୁ ଉଦ୍‌ବୁଦ୍ଧ କରିଥିଲା, ସେଥିରୁ କେତୋଟିକୁ

ପୁରାତନ ବହିରୁ ସଂଗ୍ରହ କରି ନିମ୍ନରେ ଲେଖୁଛୁ । ଊନବିଂଶ ଶତାବ୍ଦୀର ଶେଷ ଭାଗରେ ସର୍ବାଧିନ ଭା ରତେ ଋଷି ଦୟାନନ୍ଦ ଯାହା କହିଥିଲେ, ଆଜି ମଧ୍ୟ ତାହା ପ୍ରତ୍ୟେକ ସ୍ୱଦେଶପ୍ରେମୀ ଓ ଧାର୍ମିକ ବ୍ୟକ୍ତିଙ୍କୁ ସାହସ ଓ ଶକ୍ତି ପ୍ରଦାନ କରୁଛି ।

"ଆର୍ଯ୍ୟାବର୍ତ୍ତ ଦେଶରେ ଜନ୍ମ ହୋଇ ଏବଂ ଏହି ଦେଶରେ ନିବାସ କରିଥିବା ମୁଁ ଯେଉଁପରି ଏହି ଦେଶର ମତ ମତାନ୍ତରର ମିଥ୍ୟା ବିଷୟ ଗୁଡ଼ିକୁ ନିରପେକ୍ଷ ଭାବରେ ଯଥାତଥ୍ୟ ପ୍ରକାଶ କରୁଛି, ସେହିପରି ଅନ୍ୟ ଦେଶର ମତ ଗୁଡ଼ିକୁ ଆଲୋଚନା କରୁଛି । ସ୍ୱଦେଶୀଙ୍କ ସହ ଯେପରି ମନୁଷ୍ୟୋନ୍ନତି ବିଷୟରେ ବିଚାର କରୁଛି, ବିଦେଶୀଙ୍କ ସହ ମଧ୍ୟ ସେହିପରି ବିଚାର କରିବା ଉଚିତ ।" — (ସତ୍ୟାର୍ଥ ପ୍ରକାଶ — ଭୂମିକା)

"ମହା-ଭାରତ ଯୁଦ୍ଧରେ ଏହି ଦେଶର ସଂସ୍କୃତି ଉପରେ ଯେଉଁ ଆଘାତ ଲାଗିଲା, ତାହା ଫଳରେ ଏହି ଶିରୋମଣି ଦେଶ ନିଜ ପୂର୍ବ ଗୌରବ ଫେରାଇ-ବାକୁ ଆଜି ପର୍ଯ୍ୟନ୍ତ ଅସମର୍ଥ ହୋଇ ପଡ଼ିଛି । ଭାଇ ଭାଇ ମଧ୍ୟରେ କଳହ ହେଲେ ଦେଶର ଉନ୍ନତି କିପରି ସମ୍ଭବ ହେବ" (ସତ୍ୟାର୍ଥ ପ୍ରକାଶ-ଭୂମିକା)

"କୌଣସି ସଂସ୍କୃତ ଗ୍ରନ୍ଥରେ ବା କୌଣସି ପ୍ରାଚୀନ ଇତିହାସ ଉଲ୍ଲେଖ ନାହିଁ ଯେ, ଆର୍ଯ୍ୟମାନେ ଇରାନ୍ ବା ଅନ୍ୟ ଦେଶରୁ ଏଠାକୁ ଆସି ଏଠାର ଅଧିବାସୀଙ୍କୁ ଯୁଦ୍ଧରେ ଜୟ କରି ରାଜା ହେଲେ । ଏପରି ସ୍ଥଳେ ନବୀନ ବିଦେଶୀ ଐତିହାସିକ ଓ ତାହାଙ୍କ ଅନୁଗାମୀନଙ୍କ କଳ୍ପନାକୁ କିପରି ମାନିବା ?

(ସତ୍ୟାର୍ଥ ପ୍ରକାଶ ଅଷ୍ଟମ ସମୁଲ୍ଲାସ)

"ଗୋରକ୍ଷା ଏବଂ ରାଜକାର୍ଯ୍ୟରେ ଦେବନାଗରୀ ବା ହିନ୍ଦୀ ଭାଷାର ପ୍ରୟୋଗପାଇଁ ଶୀଘ୍ର ହିଁ ପ୍ରଯତ୍ନ କର ।" (ଲାଲ୍ କାଳଚରଣଙ୍କ ନିକଟକୁ ପତ୍ର)

"ମନୁଷ୍ୟ ବ୍ରହ୍ମଚର୍ଯ୍ୟାଦି ଉତ୍ତମ ନିୟମଦ୍ୱାରା ତ୍ରିଗୁଣ, ଚତୁର୍ଗୁଣ ଆୟୁ ବର୍ଦ୍ଧନ କରିପାରେ । (ବ୍ୟବହାର ଭାନୁ)

"ସ୍ତ୍ରୀ ପାଠଶାଳାରେ ପାଞ୍ଚବର୍ଷର ବାଳକ ଏବଂ ପୁରୁଷ ପାଠଶାଳାରେ ପାଞ୍ଚବର୍ଷର ବାଳିକା ମଧ୍ୟ ପ୍ରବେଶ କରିବା ନିଷେଧ ।"

(ସତ୍ୟାର୍ଥ ପ୍ରକାଶ ତୃତୀୟ ସମୁଲ୍ଲାସ)

"ଯେ ବଳବାନ୍ ହୋଇ ଦୁର୍ବଳର ରକ୍ଷା କରେ ସେ ମନୁଷ୍ୟ । ଯେ ସ୍ୱାର୍ଥର ବଶବର୍ତ୍ତୀ ହୋଇ ପରର ହାନି କରେ, ସେ ପଶୁର ବଡ଼ ଭାଇ ।"

(ସତ୍ୟାର୍ଥ ପ୍ରକାଶ ଭୂମିକା)

"ମାଲିକ ଯେପରି ହସ୍ତପଦାଦି ଅଙ୍ଗଗୁଡ଼ିକୁ ରକ୍ଷାକରେ, ସେହିପରି ସେବକକୁ ମଧ୍ୟ ରକ୍ଷା କରିବା ଉଚିତ । ଅନ୍ନ, ଜଳ, ଗୃହ, ବସ୍ତ୍ରାଦି ଯେପରି ଦେହକୁ ରକ୍ଷା କରନ୍ତି, ସେବକ ସେହିପରି ମାଲିକକୁ ରକ୍ଷା କରିବା ଉଚିତ ।"

(ଜୀବନ ଚରିତ)

"ମୁଁ ଜୀବଙ୍କୁ ବନ୍ଦୀ କରିବା ପାଇଁ ସଂସାରକୁ ଆସି ନାହିଁ । ବନ୍ଦୀକୁ ମୁକ୍ତ କରିବା ପାଇଁ ଆସିଛି । (ବିଷ ଦାତାପ୍ରତି— ଜୀବନ ଚରିତ)

"ମୋର ସ୍ମାରକ ଚିହ୍ନ ସ୍ଥାପନ କରିବ ନାହିଁ, କାରଣ ଏଥିରୁ ମୂର୍ତ୍ତିପୂଜା ଆରମ୍ଭ ହେବ । ମୋର ଶବକୁ ଭସ୍ମ କରି ଶସ୍ୟ କ୍ଷେତ୍ରରେ ବିଞ୍ଚିଇ ଦେବ ।"

(କବିରାଜ ଶ୍ୟାମଲ ଦାସଙ୍କୁ ପତ୍ର)

"ଲୋଭ ଦେଖାଇ ମତେ ସର୍ବେଶ୍ୱରଙ୍କ ଆଜ୍ଞା ଉଲ୍ଲଂଘନ କରିବା ପାଇଁ ପ୍ରବର୍ତ୍ତାଅ ନାହିଁ" । (ଉଦୟପୁର ନରେଶଙ୍କ ପ୍ରତି)

"ଆର୍ଯ୍ୟ ପତ୍ରିକାରେ ଅଶ୍ଳୀଳ ନାଟକର ବିଜ୍ଞାପନ ଦେଇ ଅନୁଚିତ କାର୍ଯ୍ୟ କରିଛ । ଆର୍ଯ୍ୟ ସମାଜ ସ୍ଥାପନ କରିଛ ନା ଭଣ୍ଡୁଆ ଲୋକଙ୍କ ସମାଜ ।"

(ଲାଲ କାଳିଚରଣଙ୍କ ନିକଟକୁ ପତ୍ର)

"ହେ ପରମାତ୍ମନ ! ଅଙ୍ଗୀକୃତକୁ କଦାପି ତ୍ୟାଗ ନ କରିବା ଆପଣଙ୍କ ଧ୍ରୁବବ । ଏଣୁ ଆପଣ ଆମ୍ଭମାନଙ୍କୁ ସଦୈବ ସୁଖପ୍ରଦାନ କରିବେ—ଏହି ଦୃଢ଼ ବିଶ୍ୱାସ ରହିଛି ।" (ଆର୍ଯ୍ୟାଭିବିନୟ)

---

Printed by— K. Brahmachari at Paramarthi Printing Works,Cto.-1